# INDUMATEE

BY

GANGADHAR MEHER




---

ଶ୍ରୀ ଗଙ୍ଗାଧର ମେହେରଙ୍କ ଦ୍ୱାରା

ପ୍ରଣୀତ

ଓ

ଶ୍ରୀ ଭଗବାନ ମେହେରଙ୍କ ଦ୍ୱାରା

ପ୍ରକାଶିତ

---

ନୂତନ ସଂସ୍କରଣ

୧୯୪୦

Price—6 Annas ମୂଲ୍ୟ—ଛ'ଅଣା ମାତ୍ର

# ଉତ୍ସର୍ଗ

ବନ୍ଦ୍ରହୃତକୁମୁଦବନତୋଷଣୀ-ପ୍ରଭୁପ୍ରଦାୟକ ଉତ୍କଳାକାଶ-
ସୌନ୍ଦର୍ଯ୍ୟମାଦକ ପର୍ବଶର୍ବରୀନାୟକ ଶ୍ରୀଲ
ଶ୍ରୀଯୁକ୍ତ ରାମଚନ୍ଦ୍ର ଭଞ୍ଜ ଦେବ ମହାରାଜ
ବାହାଦୂର ମୟୂରଭଞ୍ଜାଧୀଶ୍ବର
ମହାମହିମେଷୁ

ସବିନୟ ନିବେଦନମିଦଂ

ମହାରାଜ,

ବରପାଲୀ ଯୁବରାଜଙ୍କ ବିବାହ ସମୟରେ ବାରିପଦା ରାଜଧାନୀର ଉପକଣ୍ଠବର୍ତ୍ତୀ ମଧୁବନୋଦ୍ୟାନରେ ଶ୍ରୀଛାମୁଙ୍କର ମୁଖାରବିନ୍ଦ ଦର୍ଶନ କଲି ମାତ୍ରେ ମୋହର ହୃଦୟରେ ଏକ ଅନିର୍ବଚନୀୟ ଭାବ ଉଦିତ ହେଲା । ପରେ ରାଜନୀତିପରାୟଣତା, ପ୍ରଜାରଞ୍ଜକତା ପ୍ରଭୃତି ରାଜୋଚିତ ସମସ୍ତ ଲକ୍ଷଣ ଓ ଉଦାରହୃଦୟତା, ନିରହଙ୍କାରିତା, ସୁଶୀଳତାଦି ଦେବୋପମ ବହୁବିଧ ସଦ୍‌ଗୁଣର ଭୂରି ଭୂରି ପ୍ରତ୍ୟକ୍ଷପ୍ରମାଣ ସନ୍ଦର୍ଶନ କରିବାରୁ ଅନୁପମ ଭକ୍ତିର ସଞ୍ଚାର ହେଲା । ଶ୍ରୀଛାମୁଙ୍କର ଚରଣାର୍ଚ୍ଚନ କରି ସେହି ଭକ୍ତି ଚରିତାର୍ଥ କରିବାକୁ ଉତ୍ସୁକ ଥାଇ ଅଛି ସୁଦ୍ଧା କୌଣସି ସୁଯୋଗ ପାଇ ପାରି ନ ଥିଲି । ସଂପ୍ରତି ନିଃସ୍ବ ଭକ୍ତର ସାମାନ୍ୟ ଦୂର୍ବା କୃପାମୟ ପ୍ରଭୁଙ୍କର ଅବଜ୍ଞେୟ ହୁଏ ନାହିଁ ଭାବି ମୋହର ନବୋଦ୍ୟମପ୍ରସୂତ ଏହି କ୍ଷୁଦ୍ର କାବ୍ୟଖଣ୍ଡି ଶ୍ରୀ ମହାରାଜଙ୍କ କର-କମଳରେ ଅର୍ପଣ କଲି । ଇତି ।

୨୧ । ୮ । ୯୪
ବରପାଲୀ,
। ଜି । ସମ୍ବଲପୁର

କୃପାକାଙ୍କ୍ଷୀ
ଶ୍ରୀ ଗଙ୍ଗାଧର ମେହେର

ଦ୍ୱିତୀୟ ସଂସ୍କରଣ

# ବିଜ୍ଞାପନ



'ଇନ୍ଦୁମତୀ' ଦ୍ୱିତୀୟ ବାର ପ୍ରକାଶିତ ହେଲା । ଏଥର କେତେକ ଶବ୍ଦ ସଂଶୋଧିତ, କେତେକ ପଦ୍ୟ ପରିବର୍ତ୍ତିତ ଓ ପରିବର୍ଦ୍ଧିତ ହୋଇଅଛି। ଆଶା ହୁଏ, ତହିଁ ନିମନ୍ତେ ସହୃଦୟ ପାଠକବର୍ଗଙ୍କ ଶୁଭ ଦୃଷ୍ଟି ହ୍ରାସ ହେବ ନାହିଁ । ଇତି ।

ପ୍ରକାଶକ
ଶ୍ରୀ ଭଗବାନ ମେହେର

କବିବର

ରାୟ ରାଧାନାଥ ରାୟବାହାଦୁରଙ୍କ

# ମନ୍ତବ୍ୟ

( ୧ )

'ଇନ୍ଦୁମତୀ' କାବ୍ୟ ମୁଁ ଆଦ୍ୟପ୍ରାନ୍ତ ପାଠ କରି ଅଶାତୀତ ପ୍ରୀତି ଲାଭ କରିଅଛି । ଏ କାବ୍ୟର କବି ସାମାନ୍ୟ ଶକ୍ତିଶାଳୀ ଲେଖକ ନୁହନ୍ତି । ମୂଳ ଚରିତ ରଘୁବଂଶରୁ ସଂଗୃହୀତ ହୋଇଥିଲେ ହେଁ ଏହାର ଭାବ ଏବଂ ଭାଷା ଦୃଷ୍ଟିରେ ମୁଁ ଏହାକୁ ଅଭିନବ ଏବଂ ଉତ୍କୃଷ୍ଟ କାବ୍ୟ-ରୂପେ ଗ୍ରହଣ କରିବାକୁ ଲେଶମାତ୍ର କୁଣ୍ଠିତ ହେବି ନାହିଁ । ଗ୍ରନ୍ଥକାର ଏଥିରେ ଅନେକ ନୂତନ ଏବଂ ସୁନ୍ଦର ଭାବ ସନ୍ନିବେଶିତ କରିଅଛନ୍ତି । ଏହାର ଭାଷା ସରଳ, ଅକ୍ଲିଷ୍ଟ ଏବଂ ଶ୍ରୁତିମଧୁର ହୋଇଅଛି । ମୋହର ମତରେ 'ଇନ୍ଦୁମତୀ' ସ୍ୱଭାବସୁନ୍ଦରୀ ଉତ୍କଳଭାରତୀଙ୍କର ଅନୁପଯୁକ୍ତ ଭୂଷଣ ନୁହେ ।

କଟକ
୨୨ । ୨ ।୯୪ } ଶ୍ରୀ ରାଧାନାଥ ରାୟ

# ମନ୍ତବ୍ୟ

( ୨ )

'ଇନ୍ଦୁମତୀ' ର ପାଣ୍ଡୁଲେଖ୍ୟ ଅବସ୍ଥାରେ ମୁଁ ତାହା ଆଦ୍ୟୋପାନ୍ତ ପାଠ କରି ଗ୍ରନ୍ଥକାର ମହାଶୟଙ୍କୁ ମୋହର ମତ ଜଣାଇଥିଲି । ଗ୍ରନ୍ଥକାର ସେହି ମତ ପୁସ୍ତକର ମୁଖବନ୍ଧରେ ସଂଯୋଜିତ କରିଅଛନ୍ତି ।

ପୁସ୍ତକର ଉତ୍କର୍ଷ ସମ୍ବନ୍ଧରେ ମୋହର ଅଧିକ କହିବାର ଅନାବଶ୍ୟକ । ମୁଁ ଆଶା କରେ, ଉତ୍କଳର ସାହିତ୍ୟରସିକମାନେ କାବ୍ୟ ଖଣ୍ଡିକ ସମଗ୍ର ପାଠ କରି ନିଜ ନିଜ ମତ ସ୍ଥିର କରିବେ । ଉତ୍କଳୀୟ ପାଠକଙ୍କର ତ କଥା ନାହିଁ, ଯେମାନେ ସଂସ୍କୃତ ରଘୁବଂଶରେ ଇନ୍ଦୁମତୀର ଚରିତ ପାଠ କରିଅଛନ୍ତି, ସେମାନେ ପୁଣା ଏହି କାବ୍ୟ ପାଠ କରି ପଠନଶ୍ରମକୁ ପଣ୍ଡଶ୍ରମ ମଣିବେ ନାହିଁ ।

ଗ୍ରନ୍ଥକାର ଉତଟିଷାର ସୁବିଧା ପାଇ ନ ଥିଲେ ; ମାତ୍ର ତାହାଙ୍କର ନୈସର୍ଗିକ ପ୍ରତିଭା ସେହି ଅଭାବ ପୂରଣ କରିଦେଇଅଛି । ସେହି ପ୍ରତିଭାବଳରେ ସେ ପ୍ରକୃତିର ସୌନ୍ଦର୍ଯ୍ୟ ପରୋକ୍ଷ ଭାବରେ ପୁସ୍ତକରେ ନ ଦେଖି ସେଥିର ସ୍ପଷ୍ଟ ପ୍ରତ୍ୟକ୍ଷ କରିଅଛନ୍ତି ଏବଂ ଯାହା ଦେଖିଛନ୍ତି, ତାହା ଯଥାଯଥ ବର୍ଣ୍ଣନା କରିଅଛନ୍ତି । ୪୬ ପୃଷ୍ଠାରେ ଉଦ୍ୟାନବର୍ଣ୍ଣନା ମୋହର ଏହି କଥାର ଏକତର ପ୍ରମାଣରୂପେ ଗୃହୀତ ହୋଇ ପାରେ ।

'ଇନ୍ଦୁମତୀ'ର ଆଉ ଗୋଟିଏ ପ୍ରଧାନ ଗୁଣ ଏହି ଯେ, ଏଥିରେ ଏପରି କୌଣସି ଭାବ ବା ଶବ୍ଦ ନାହିଁ, ଯାହା ଆଧୁନିକ ରୁଚି ଅନୁସାରେ ବର୍ଜନୀୟ ବୋଲି ବିବେଚିତ ହେବ । ମୋହ ମତରେ ଏହା ଉତ୍କଳ-ବିଦ୍ୟାଳୟମାନଙ୍କରେ ପାଠ୍ୟପୁସ୍ତକରୂପେ ପ୍ରବର୍ତ୍ତିତ ହେବାର ସମ୍ପୂର୍ଣ୍ଣ ଉପଯୁକ୍ତ ଅଟେ ।

ପୁସ୍ତକର ସ୍ଥାନେ ସ୍ଥାନେ ଯେଉଁ ଦୋଷ ଅଛି, ଗୁଣ ସହିତ ତୁଳିତ ହେଲେ ତାହା ନିତାନ୍ତ ସାମାନ୍ୟ ଅଟେ । ଇତି ।

୭ । ୧୨ । ୯୪ ।　　　　ଶ୍ରୀ ରାଧାନାଥ ରାୟ

'ଇନ୍ଦୁମତୀ' କାବ୍ୟପ୍ରଣେତା
ଶ୍ରୀ ଗଙ୍ଗାଧର ମେହେରଙ୍କ ପ୍ରତି *



"But knowledge to their eyes her ample page
"Rich with the spoils of time did ne'er unroll.
"Chill penury repress'd their noble rage
"And froze the genial current of the Soul."

ଅହେ ଭ୍ରାତଃ, ତୁମ୍ଭଙ୍କୁ ମୁଁ କେବେ ଦେଖି ନାହିଁ,
ତବ କଥା ମନେ ମୋର ପଡ଼ଇ କିପାଇଁ ?
ଚିହ୍ନ କି ନ ଚିହ୍ନ ମୋତେ ତୁମ୍ଭେ, ଜାଣେ ନାହିଁ;
ତୁମ୍ଭଙ୍କୁ ମଣଇ କିନ୍ତୁ ମୁହିଁ ନିଜ ଭାଇ ।
ଲୋଡ଼େ ନାହିଁ ଦେଖିବାକୁ ମୁଁ ତୁମ୍ଭ ମୂରତି,
ଦେଖି କାଳେ ତୁଟିଯିବ ମାୟା ତବ ପ୍ରତି ।
ପଢ଼ିଅଛି 'ଇନ୍ଦୁମତୀ' କାବ୍ୟ କେତେ ଥର,
ସେହିଠାରେ ପରିଚୟ ତୁମ୍ଭର ମୋହର ।
ଲାବଣ୍ୟ-କାସାର-ହଂସ, ପ୍ରକୃଷ୍ଟ ଅଦ୍ଭୁତ,
କାଳିଦାସ ଭାରତୀୟ ବାଣୀ-ବରସୁତ,
ଯୋଗ୍ୟ ଅନ୍ତେବାସୀ ତୁମ୍ଭେ ଅଟ ତାହାଙ୍କର,
ବଳିହାରି, ସ୍ତୁତି ପ୍ରତି ସମ୍ଭାର ଅର୍ଘ୍ୟର ।
ପବିତ୍ର ପ୍ରଣୟ ଏ ମୋ ଭାରତୀ-ନନ୍ଦନ,
ମହାର୍ଘ ଭୂଷଣ ପ୍ରାୟ କର ହେ ଗ୍ରହଣ ।
ସଂସାର ଅଖିଳ ସ୍ତୁତି ହାଟେ ଘାଟେ ମିଳେ,
ଏ ମୋହର ସ୍ନେହ ନାହିଁ ସ୍ୱାର୍ଥସ୍ତବ ତଳେ ।

---

* ଲେଖକ-ଉତ୍କଳର ସୁପ୍ରସିଦ୍ଧ କବି ଶ୍ରୀଯୁକ୍ତ ନନ୍ଦକିଶୋର ବଳ, ବି.ଏ., ବି.ଟି.

ଖଣ୍ଡେ କାବ୍ୟ ଲେଖି ଦେଇ ରହିଲ ନିଶ୍ଚିନ୍ତ,
ଐଶୀ ଶକ୍ତି ନାଶି କର୍ମେ ହେଲା କି ଉଚିତ ?

ଶୁଣିଅଛି ଦରିଦ୍ରତା କଠୋର ନିର୍ଘାତ,
ସହୁ ଭକ୍ତେ କବି, ତୁମ୍ଭେ କର ଉନପାତ ।

ସ୍ମୃତିରେ ତୁମ୍ଭର ପରି ମୂର୍ତ୍ତି ଆଉ ଜଣେ,
ଦାରୁଣ ଦୁଃଖପ୍ରହାରେ ରହିଛି ଜଣ୍ଡୁ ମନେ ।

ଅଛି କବିବାଣୀ, "ଦୁଃଖୀ ପାଇ ଦୁଃଖୀ ଜନ
ଯେଉଁ ସୁଖ ପାଏ, ନ ପାଏ ତା ସୁଖୀ ଜନ ।"

ତେଣୁ ମୋର ତୁମ୍ଭ ପ୍ରତି ଏ ସହାନୁଭୂତି,
ନାଚଇ ମୋ ନେତ୍ରେ "ଇନ୍ଦୁମତୀ" କବିମୂର୍ତ୍ତି ।

ଜନ୍ମୁଥାନ୍ତ ଯେବେ ସଭ୍ୟ ଉନ୍ନତ ଦେଶରେ,
ବାଜୁଥାନ୍ତା ନାମ ତବ ଢକ ଦଗନ୍ତରେ ।

ଆବାଲବୃଦ୍ଧବନିତା ଦୁଃଖୀ ପ୍ରିୟ କବି,
ହୃଦ ମଧ୍ୟେ ରଖିଥାନ୍ତେ ତବ ଦୀନ ଛବି ।

ପୂର୍ବ ସୁକୃତ ବିହୀନେ ପଡ଼ି ଏ ଉଷର,
ସୁପ୍ରତିଭ-ମଣି ଅଛି ବିନଷ୍ଟ ତୁମ୍ଭର ।

କବିତା-ଲତାରେ ଏକ ମାତ୍ର ଫୁଲ ଫୁଟି,
ଅନାଦରେ ସେ ଲତିକା ଗଲା କି ଉଲୁଟି !

ଶୁଣିଅଛି, ଅଟ ତୁମ୍ଭେ ସୁଶୀଳ ବିନୀତ,
ତେଣୁ ତୁମ୍ଭ ନାମେ ଅଜି ଭଣିଲି ଏ ଗୀତ ।

କଠୋର ଶୃଙ୍ଖଳ ଫିଙ୍ଗି ଦିଅ ବିଷାଦର,
ପଦାଘାତ କର ଅତ୍ୟାଗ୍ରହରେ ସମାଜର ।

ଦରିଦ୍ରତା ନୁହେଁ କବି ପ୍ରତିଭା-ନାଶକ,
ବହ୍ନି ବିନା ହେଲ ଖାଣ୍ଟି ସୁନା ପରୀକ୍ଷକ ।

ପଢ଼ନ୍ତ ସୁନ୍ଦର କାବ୍ୟ ଲେଖି ପ୍ରିୟ କବି,
ସମୁଜ୍ଜ୍ୱଳ କର ମାତୃଭୂମି ମୁଖଛବି ।
କର୍ମନାଶା-ନୀରେ ହେଉ କାନ୍ତି ବିସର୍ଜନ,
ବୈଶ୍ୟଙ୍କୁ ଶିଖନ୍ତୁ ଆଜି କ୍ଷତ୍ରିୟ ବ୍ରାହ୍ମଣ ।
ଭିକ୍ଷୁକ ସଙ୍ଗତେ ନୃପ-ମୁକୁଟ-ମଣ୍ଡିତ
କାଳବଳେ ହେବେ ସର୍ବେ ଭବୁଁ ଅନ୍ତର୍ହିତ ।
କିନ୍ତୁ ତୁମ୍ଭେ ଦୀନ କବି ରହିବ ଜୀବିତ,
ଯେତେ ଦିନ ଭବେ ଥିବ ଓଡ଼ିଆ ସାହିତ୍ୟ ।
ଯେତେ ଲୁଚାଇଲେ ନ ଲୁଚଇ ଅଗ୍ନି, ସତ୍ୟ,
ଲୁଚିଲେ କି ଚର୍ମ କବି ବଳଦେବ ରଥ ?



# ଇନ୍ଦୁମତୀ

## ପୂର୍ବଭାଗ

( ସ୍ୱର—ବଙ୍ଗଳାଶ୍ରୀ )

ବିଦର୍ଭ ନଗରେ                    ପୁରବାସିଗଣ
ଆଜ ଅତି ଉଲ୍ଲସିତ,
ଆନନ୍ଦ-ସାଗର—                    ତରଙ୍ଗେ ନଗର
ହେଉଅଛି ଉଦ୍‌ବେଳିତ ।
ବିଦର୍ଭାଧିପତି                    ଅନୁଜା ନିମନ୍ତେ
କରି'ଛନ୍ତି ସ୍ୱୟମ୍ବର,
ସମାଗତ ହୋଇ—                    ଅଛନ୍ତି ଅନେକ
ଦେଶର ନୃପକୁମର ।
ଚୌଦିଗେ ଶୋଭଇ                    ଖଡ଼ୀଶୈଳ ପ୍ରାୟେ
ତୁଙ୍ଗ ଶୁଭ୍ର ବସ୍ତ୍ରବାସ,

ମାତଙ୍ଗ ବୃଂହିତ ଅଶ୍ୱ ହ୍ରେଷାରବେ
ପୂର୍ଣ୍ଣ ହେଉଛି ଆକାଶ ।
ବିବିଧ ଦେଶୀୟ ବିବିଧ ବାଜଣା
ବାଜି ନାନା ରଙ୍ଗ ସ୍ୱରେ,
ଜନ-କୋଳାହଳ ସହିତରେ ମିଶି
ଶ୍ରବଣକୁ ସ୍ତବ୍ଧ କରେ ।

ଯୁବତୀମାନଙ୍କ ଆନନ୍ଦ ଚହଳେ
ପୂରିଅଛି ରାଜପୁର,
ବିରସ ଚିନ୍ତାରେ ଅବସର ଦିନ
ରହିଅଛି ହୋଇ ଦୂର ।

ଲେମାକୁ ପ୍ରବେଶ କରିବା ନିମନ୍ତେ
ତତ୍ପର ସକଳ ଆଳି,
କେ ଘୋରେ ଚନ୍ଦନ କେ ଘୋରେ କସ୍ତୁରୀ
କେ ଗୁନ୍ଥଇ ପୁଷ୍ପମାଳୀ ।

ଅଳଙ୍କାର ପେଡ଼ୀ ଆଣି କେଉଁ ସଖୀ
ଫେଡ଼ି ଥୋଇଅଛି ପାଶେ,
ବାଛି ବାଛି ଯୋଷା ଲଗିହେବ ଭୂଷା
ଯେ ଅବା ରୁଚିକି ଆସେ ।

ନାନା ରଙ୍ଗ ପାଟ— ଶାଢ଼ୀମାନ ଆଣି
ଦେଖାଉ'ଛି କେଉଁ ଆଳୀ,
ଯହିଁ ଅଭିରୁଚି ହେବ ସେହି ଶାଢ଼ୀ
ଲଗିହେବ ବୋଲି ବାଳୀ ।

ହସ୍ତ କଙ୍କତୀରେ ଶ୍ୟାମଳ କୁନ୍ତଳ
ଗୁନ୍ଥି ଦେଉ'ଛି କେ ବେଣୀ,

ଙ୍କେ ସଖୀ ସମକ୍ଷେ ଠିଆ ହୋଇଅଛି
କନକ-ମୁକୁର ଘେନି ।

ଏଣେ ରାଜଯଜ୍ଞ ମନୋହର ବେଶେ
ହୋଇଲାଣି ସୁସଜ୍ଜିତ ,
ଆନେ କି ଉପମା ? ଯା ଶୋଭା ଚାହିଁଲେ
ସୁଧର୍ମା ହେବ ଲଜ୍ଜିତ ।

ଜଣେ ଜଣେ ହୋଇ ସମାଗତ ହେଲେ
କ୍ରମେ ସର୍ବ ନରପତି,
ସନ୍ଧ୍ୟାଦେବୀ କୋଳେ ଉଇଁ ଆସିଲେ କି
ଉଜ୍ଜ୍ୱଳ ତାରକାପଙ୍କ୍ତି ।
ବସିଲେ ତହିଁରେ ଅତି ମନୋହର
ସ୍ୱର୍ଣ୍ଣମୟ ସିଂହାସନେ,
ଆରମ୍ଭିଲେ ଅବା କମଳ ସକଳ
ଫୁଟିଗଲେ ପଦ୍ମବନେ ।
ତହିଁ ମଧ୍ୟେ ବସେ କୋଶଳ-ନୃପତି—
ଯୁକ୍ତ ଅଜ ଯୁବରାଜ,
ସୁରବୃନ୍ଦ ସଙ୍ଗେ ମହୀକି ଆଗତ
ହେଲେ କି ସେ ଦେବରାଜ !
ଅବା ଅକସ୍ମାତ ସ୍ୱଚ୍ଛ ନୀର ପୂର୍ଣ୍ଣ
କୁମୁଦ-ଶୋଭିତ ସରେ,
ବାଳାର୍କମଣ୍ଡଳ ପ୍ରତିବିମ୍ବ ଆସି
ପଡ଼ିଗଲା ଭରତରେ ।

ପୂର୍ଣ୍ଣ କଳାକର ସମୁଦିତ ହେଲେ
ତାରକୁଳ ଯଥା ମ୍ଳାନ,

ଅଜ ଆଗମନେ ନୃପମାନଙ୍କର
ହ୍ରସ୍ୱ ହେଲା ଅଭିମାନ ।
କନ୍ୟା ଲାଭ ଆଶା ଦୂର ହୋଇଗଲା
ମାନସରୁ ତାହାଙ୍କର,
ଶରଦ ଆଗମ ଦରଶନେ ଯଥା
ଆକାଶରୁ ଜଳଧର ।
ସ୍ୱୟମ୍ବରମଣ୍ଡଳ ମଧ୍ୟେ ବିରାଜିଲା
ଏକାଳେ ସ୍ୱୟନନ୍ଦିନୀ,
ଇନ୍ଦଶସ୍ୱପନ ତଳେ ବିଳସିଲା
କିବା ସ୍ଥିରୁ ସୌଦାମିନୀ ।
ଅଥବା ରତନ— ଖଣିଗର୍ଭେ ହେଲା
ଦୀପଶିଖା ପ୍ରଜ୍ୱଳିତା,
ନବ ବିକସିତ କମଳ-କାନନେ
କମଳା ବା ବିରାଜିତା ।
ସ୍ୱୟସୂତ୍ର ଚନ୍ତ— ଆହ୍ଲାଦଦାୟିନୀ
ବରମାଳ୍ୟ ଅଛି ଧରି,
କୁମୁଦମାଳିନୀ ଶରଦ-କୌମୁଦୀ
ଶୋଭା-ଗର୍ବ ଅପହରି ।
ସ୍ୱୟଂ ଅଦଭୁତେ ଅପୂର୍ବ ଲାବଣ୍ୟ
ରୂପସୀ ରୂପସାଗରେ,
ରୂପଲୋଭୀ ନୃପ-- କୁମାରଙ୍କ ମନ—
ମୀନେ ବୁଡ଼ିଗଲେ ଖରେ ।
ମାଳ୍ୟ ଲଭିବାକୁ ନୃପ-ସୁତମାନେ
ସମସ୍ତେ ଲୋଲୁପଚିତ୍ତ,

ଝୁଲୁଛି ଅଳି— ବୃନ୍ଦ ବୃନ୍ଦ ଯଥା
ଏକ ପଦ୍ମ ବଢ଼ସିତ ।
ତାହା ମଧ୍ୟବର୍ତ୍ତୀ— ଫୁଲର ସେ ମାଳା
ଅଧିକାରୀ ହଏ ତାର,
ମଧକର-ପଦକୁ ଭୁଞ୍ଜି ମଣିବ ସେ
ଯା ଗଳାକୁ ଶିବ ହାର ।
ଇନ୍ଦୁମତୀ ସଙ୍ଗେ ଥିଲା ସୁବୟସୀ
ସୁନନ୍ଦା ସୁଲକ୍ଷଣା,
ରାଜଗଣଙ୍କର କୁଳ ଶୀଳ ସବୁ
କଥା ତାକୁ ଥାଏ ଜଣା ।
ପ୍ରଥମେ ମଗଧ— ନାଥଙ୍କ ସମ୍ମୁଖ
କୁମାକୁ ନେଇ ମଇଲା,
ଲଳିତ ବଚନେ ତାଙ୍କ ଯଶ ଗୁଣ—
ଚମ୍ପୁ ବିସ୍ତାର କହିଲା ।
ସୁହାଁ ଲୋ ସୁନ୍ଦର ! ପୁରତେ ମଗଧ—
ପତି ଜଗଦ୍ଦେବକଇନ୍ଦୁ,
ମର୍ତ୍ତ୍ୟ-ମଣ୍ଡଳର ଲଳାଟମଣ୍ଡିତ
ସୁରମ୍ୟ ସିନ୍ଦୂରବିନ୍ଦୁ ।
ପରଜାବତ୍ସଳ ଦେବପରାୟଣ
ରୂପ ଅତି ଅନୁପମ,
ପ୍ରବଳ ପ୍ରତାପୀ ପରବଳ ତାପି
ସାର୍ଥ ପରନ୍ତପ ନାମ ।
ଇଚ୍ଛା ହେଲେ ତୋର ଏହି ନୃପଙ୍କର
ଶାତଳ କର ଧାରଣ,

ଶାରଦୀୟ ଚନ୍ଦ୍ର ସମୀପେ ରୋହିଣୀ
ପରିସ୍ଫୁଟ ରୂପ ଶୋଭନ ।
ମୁହଁ ମୋଡ଼ି ଦେଇ ସେଠାରୁ ଗମନ
କଲେ ସେ ଗଜଗାମିନୀ,
ନିଶାକରଠାରେ କେବେ କି ପ୍ରସନ୍ନ
ହୋଇଅଛି କମଳିନୀ ?
କିଶୋରୀମଣିକୁ ଚତୁର ପ୍ରିୟସଖୀ
ନେଇ ଅଙ୍ଗପତି ପାଶେ,
ସକାଙ୍କ ସୁନ୍ଦର— ପଣକୁ ବଖାଣି
କହିଲା ମଧୁର ଭାଷେ ।
ଦେଖ ଖଞ୍ଜନାକ୍ଷି ! ବଳେ କରିଛନ୍ତି
ଦ୍ୱିତୀୟ ଅନଙ୍ଗ ରୂପ,
ନବୀନ କିଶୋର— ମୁକୁଟ ଏହନ୍ତି
ଅଙ୍ଗମଣ୍ଡଳର ଭୂପ ।
ଅତି ସୁକୁମାର ନୃପତିକୁମାର
ଅଖିଳ ଗୁଣମଣ୍ଡିତ,
ବିଭବସମ୍ପନ୍ନ ଅତି ବିଚକ୍ଷଣ
ନାନା ବିଦ୍ୟାରେ ପଣ୍ଡିତ ।
ପଦ୍ମପତ୍ର କୁଳ— ଭୟଦ ବୀର ଏ
ସ୍ୱଚ୍ଛନ୍ଦଶୁଭଦ ଧୀର,
ନୀତିବିଶାରଦ ସମରକୁଶଳ
ଦୃଷ୍ଟିଭେଦୀ ଯାର ତୀର ।
ନୟନଶୁଭଗ ସୁନ୍ଦର ମୂରତି
ଅପସରୀ ଲୋଭନୀୟ,

ଧରଣୀମଣ୍ଡଳେ ଅଛନ୍ତି ଏ ଚୋର
ପଞ୍ଚପଦେ ଶୋଭନୀୟ ।
ଗନ୍ଧାଢ୍ୟ ହେଲେ ହେଁ ଭ୍ରମରରେ ଯଥା
କେତକୀ ନୁହେ ସେବିତ,
ତରୁଣ ରୂପରେ ରାଜନନ୍ଦନୀର
ଚିତ୍ତ ନ ହେଲା ମୋହିତ ।
ତହୁଁ ନେଇ ତାକୁ ଅବନ୍ତୀନୃପତି
ସମକ୍ଷରେ ସହଚରୀ,
ବୋଲେ, ଦେଖ ଦେଖ ଥରେ ଚଳାପାଙ୍ଗି
ପୁରତେ ନୃପକେଶରୀ ।
ଦୀର୍ଘ କଳେବର ମହାଶକ୍ତିଶାଳୀ
ବୃଷସ୍କନ୍ଧ ବୀରବର,
ନୃପତିଙ୍କ ଭାଲ— ସମ୍ମାନେ ଦଶନ୍ତ
କେଶରୀ ପ୍ରାୟେ ଭାସ୍ୱର ।
ଶ୍ରୀମୁଖ-ମୁକୁରେ ଉତ୍ସାହ ସାହସ
ହେଉଛି ପ୍ରତିବିମ୍ବିତ,
କ୍ଷତ୍ରିୟଧର୍ମ କି ବୀରରସ ଅବା
ବିଗ୍ରହ ଧରି ଶୋଭିତ ।
ରାଜଧାନୀ ପାଶେ ବହେ ଯାର ସ୍ୱଚ୍ଛ—
ନୀର ଶିପ୍ରା ସ୍ରୋତସ୍ୱିନୀ,
କଳ ରାଜହଂସ— ରାଜି ବିରାଜିତ
ଘନକଲ୍ଲୋଳମାଳିନୀ ।
ରମ୍ୟ ଶୁଭ୍ର ଅଙ୍ଗ— ଲିହାଗ୍ର ବିଚିତ୍ର
ରାଜପ୍ରାସାଦ ତା ତୀରେ,

ସଦା ସମୁଜ୍ଜ୍ୱଳ ମହାକାଳ-ଚିର—
ସୁଧାକର-କୌମୁଦୀରେ ।
ଶିବସେବାର୍ଥିନୀ ବାମାଏ ପ୍ରଭାତେ
ଶିପ୍ରାସ୍ରୋତେ କରି ସ୍ନାନ,
ଚିବ ଦ୍ୱିଜ ମୃଦୁ ମଧୁସମ ସ୍ୱରେ
କରନ୍ତି ସଙ୍ଗୀତ ଗାନ ।

ପ୍ରତଧ୍ୱନି ଛଳେ ଦେଉଳ ହିଁ ତାଙ୍କ
ସଙ୍ଗିଣୀରେ ଯୋଗ ଦଏ,
ସେ ସଙ୍ଗୀତ ଶୁଣି ନର ଦମ୍ଭ କେତେ,
ତରଳିଯିବେ ପଙ୍କଏ ।

ରତ୍ନ-ବିଝଟିତ ଭ୍ରମର ଚାଳନ୍ତି
ପାଶେ ବାରବାମାକୁଳ,
କ୍ଷୀଣ କଟିତଟେ ଶୋଭଇ ବଶେ ତାଙ୍କ
ଦନ୍ତସ୍ଫୁରିତ ଦୁକୂଳ ।
ସେହି ଶୋଭଶାଳୀ ପୁରେ ପୁଣ୍ୟଶୀଳା
ଲକ୍ଷ୍ମୀ ହେବାକୁ ନଳନ୍ନ,
ଥିଲେ ଧର ଏହି ନରବରଙ୍କର
ସୁନ୍ଦର କର-ପାରସ ।
ନଶାନ୍ତ ଉଦତ ଭର୍ଗବ ନଙ୍କଟୁଁ
ଚଳଇ ଯଥା ଯାମିନୀ,
ମୃଦୁ ପାଦଗୃରେ ତହୁଁ ଚୁଲିଗଲା
ମତ୍ତମାତଙ୍ଗଗାମିନୀ ।
ତହୁଁ ମତ୍ତବାଣୀ କାର୍ତ୍ତିକୀର୍ଯ୍ୟବଂଶୀ
ପ୍ରତାପ ନୃପତି ଅଗ୍ରେ,

ଅଣପ୍ରଭ ପ୍ରାୟେ ଅଟଣେ ଦେଖା ଦେଇ
ଗମନ କଲେ ବାହାରେ ।

ମଥୁର-ନରେଶ ସମୀପରେ ଠିଆ
ହୁଅନ୍ତେ ସେ ବରାଙ୍ଗନା,
ସମ୍ବୋଧନ କରି ଉଚ୍ଚସ୍ୱରେ କହେ
ଜୟଶ୍ରୀ ପିକବଚନା ।

ଶୁଣିଥିବୁ ଶଙ୍ଖ— ମୁଁଷ ! ବୃନ୍ଦାବନ
ପ୍ରକୃତି-ଶୋଭା-ସଦନ
ସ୍ଥାନେ ସ୍ଥାନେ ସ୍ୱରୁ ଲତାକୁଞ୍ଜପୁଞ୍ଜ—
ଚମ୍ପୁ ଝୋଇ ମଦନ ।

କୁସୁମିତ ହୋଇ ଶୋଭା ଦେବେ ତହିଁ
ତରୁସମାଶ୍ରିତା ବଲ୍ଲୀ,
ଜଗ ଅମୋଦିତ କରନ୍ତି ବାକଣି
ମାଧବୀ ମାଳତୀ ମଲ୍ଲୀ ।

ମନ୍ଦାନିଳ ହସ୍ତେ ତୋଳାଇ ପ୍ରଭାତେ
ପ୍ରଫୁଲ୍ଲ ମସୃନାବଳୀ
ପ୍ରକୃତି-ସୁନ୍ଦରୀ ଦେଉଥାଏ ନିତି
ସ୍ମରଣରେ ପୁଷ୍ପାଞ୍ଜଳି ।

ସରପଳ ନବ— ଘନପଟଳକୁ
ହସଇ ଯା କୀଚବଲ୍ଲୀ,
ଅଙ୍କେ ଧରି ଦଗ୍‌ଧ— ରଜତବରଣ
ନଟପଟ୍ଟ ମୀନାବଳୀ ।

ପ୍ରବାହିତ ବନ ମଧ୍ୟରେ ଯମୁନା
ଜମ୍ବୁଶ୍ୟାମଲୁଚଧାରା,

ବନଲକ୍ଷ୍ମୀଙ୍କର ଉରସୁଶୋଭିତ
ଇନ୍ଦ୍ରନୀଳମଣି ହାର ।
ଘନ-କଣ୍ଟକସ୍ଥ କଦମ୍ବ କାନନ
ମନୋହର ଚତ୍ୱର,
ଶୁଭେ ଯହିଁ ସଦା ପିକ-ଦମ୍ପତିର
ଶ୍ରବଣଶୁଭଗ ସ୍ୱନ ।
ଜମ୍ବୁବନେ ଯହିଁ ଶୁକକୁଳ ବସି
ସୁଖେ କରନ୍ତି ବିଶ୍ରାମ,
କପୋତଯୁଗଳ କୁହୁକୁହୁ ରବେ
ମୁଖରିତ ଯେଉଁ ଧାମ ।
ସେ ବିପିନ-ତଟ ବିହାରରସିକ
ଏହି ନରନାଥଙ୍କର
କର-କଞ୍ଜ ଧରି କରକ-ରଦନ !
ବିଳାସରେ ଦିନ ହର ।
ତହିଁରେ ଚତୁରେ ବରକାଣ୍ଡିନୀର
ମାନସ ଭୁଲିଲା ନାହିଁ,
ମାନସରକେଳି— ଲାଳସୀ ମରାଳୀ
କାହାରେ ରସିବ କାହିଁ ?
ତଦନ୍ତେ ସ୍ୱହସ୍ତେ ଅଗ୍ରତେ ମହେନ୍ଦ୍ର
ଶୈଳ-ଅଧିତ୍ୟକାବାସୀ,
ରଙ୍ଗେ ବସିଥିଲେ ଦାକ୍ଷିଣାତ୍ୟ ମହୀ—
ପତି ବୀରପଦଧାରୀ ।
ଲବଙ୍ଗଲତାର କୁସୁମ ସୁବାସେ
ପୁର ଯାର ସୁରଭିତ,

ରମଣୀମଣିର କରୁଣା ବଚନେ
ହେଲେ ଅତି ସନ୍ତାପିତ ।

ତପରେ ନୟନ— ଅୟନେ ଅଗତ
ପାଣ୍ଡ୍ୟ ଦେଶ ଅଧୀଶ୍ୱର,
ପାଣ୍ଡ୍ୟ ମହାରାଜ ରିପୁଭୟଦାୟୀ
ଯାର ବହ୍ନିଶିଖ ଶର ।
ଶୌର୍ଯ୍ୟ-କୀର୍ତ୍ତି-ରବି ପ୍ରଚଣ୍ଡ କିରଣ
ଭବେ ଯାର ପ୍ରକାଶିତ,
ଥାଉ ଆନ ଜନ ପ୍ରତାପରେ ଯାର
ରାବଣ ସଦା ଶଙ୍କିତ ।

ମଲୟ ଶଇଳ ନାନା ଉପହାରେ
ସେବା କରେ ଯା ପୟରେ,
ଇନ୍ଦୁମତୀ ତାଙ୍କୁ ନମସ୍କାରି ଦେଲେ
ଲଜ୍ଜା-ଜଳଧି-ପୟରେ ।

ବାଳା-ଭଗୀରଥୀ ପ୍ରୟାଣ ରଚନ୍ତି
ସାଗରସଙ୍ଗମ ପାଇଁ,
ଉପନଦୀ ପରି ରାଜାଙ୍କର ଚୟ
ତା ପଛେ ଗଲେ ଗୋଡ଼ାଇ ।

ତହୁଁ ବହୁଁ ଦେଖ ତରୁଣରତନ
ଶତମଦନସୁନ୍ଦର,
ଦିବାକରକୁଳ— ସମୁଦ୍ରସମ୍ଭୂତ
ସୁବିମଳ ସୁଧାକର,

ମୁଖମଣ୍ଡଳରୁ ଦରହାସ-ସୁଧା—
ଧାର ଯାଉଅଛି ସ୍ରବି,

ସୁହୁଁ ରାଜସୁତା ଚନ୍ଦ୍ର-ଚନ୍ଦ୍ର-ଶିଳ
ସହଜରେ ଗଲା ଦ୍ରବ ।

ହୃଦ-ସରସୀରେ ପ୍ରେମ-କୁମୁଦନୀ—
ବନ ହେଲା ବିକଶିତ,
ନେହ-ଜୀବଞ୍ଜୀବ ରଙ୍ଗେ ନୃତ୍ୟ କଲା
ହୋଇ ଅତି ଉଲ୍ଲସିତ ।

ଅନିମେଷ ନେନେ ସୁହୁଁ କେମାମଣି
ମନେ ମନେ ହେଲା ସୁଖୀ,
ନବୋଦିତ ସୂର୍ଯ୍ୟ— ମଣ୍ଡଳ ସୁହୁଁଲେ
ହାସେ ଯଥା ସୂର୍ଯ୍ୟମୁଖୀ ।

ସଂଶୟିତ ମନେ ଭାବୁଥିଲେ ଅଜ
ଲଭିବ କି ନା ଶୋଭାଙ୍ଗୀ,
ବାମେତର ବାହୁ ସ୍ପନ୍ଦ ହୋଇ ସେହୁ
ସଂଶୟକୁ ଦେଲା ଭଙ୍ଗି ।

ଜେମା ମନ ଜାଣି କହିଲା ସୁନନ୍ଦା
ସବିସ୍ତରେ ଅଜ ଯଶ,
ଏହୁଟି ଅମଳ— କମଳଲୋଚନ !
ରଘୁବଂଶ-ଅବତଂସ ।

ନୟନର ପ୍ରୀତି ସମ୍ପାଦଇ ଆହା
ମୂରତି କି ମନୋହର,
ଜାନୁଲମ୍ବି-ଭୁଜ ପ୍ରସନ୍ନବଦନ
ସୁଲଳିତ କଳେବର ।

ରାଜଲକ୍ଷ୍ମୀଙ୍କର ହୃଦ-ରତ୍ନହାର
ରଘୁ ରାଜାଙ୍କର ସୁତ,

ଶ୍ରୀଅଙ୍ଗରେ ରହି	ଅଳଙ୍କାରମାନେ
ହୋଇଛନ୍ତି ଅଳଙ୍କୃତ ।
ରଘୁ ମହାରାଜ	ପ୍ରବଳ ପ୍ରତାପୀ
ଅଦ୍ୱିତୀୟ ଧନୁର୍ଦ୍ଧର,
ଧନୁଷ୍ଟାଦ ଯାର	ଶୁଣି ଅବିଳମ୍ବେ
ସ୍ତମ୍ଭେ କନ୍ଦରେଶ୍ୱର ।
ରଜନୀରେ କଲେ	ଅଶେଷ ସୁବର୍ଣ୍ଣ
ରାଜକୋଷେ ବରଷଣ,
ସ୍ୱର୍ଣ୍ଣରାଶି ଦେଇ	ନୃପତିପୁଙ୍ଗବ
ତୁଷ୍ଟ କଲେ ମୁନି-ମନ ।
ପିତୃକୃତ ଶତ—	ତମ ଅଶ୍ୱମେଧେ
ଯାଇ ଅଶ୍ୱରକ୍ଷଣେ
ତୁରଙ୍ଗମସ୍ତେର	ବଜ୍ରଧର ସଙ୍ଗେ
ମାତିଗଲେ ମହାରଣେ ।
ଅମୋଘ କୁଳିଶ	ମୋଘ ହୋଇଗଲା
ପଡ଼ି ରଘୁ-ଶିଶୁ ଅଙ୍ଗେ,
ସୁରପତି ଦେଇ	ବହୁ ଧନ୍ୟବାଦ
ସନ୍ଧି କଲେ ରଘୁ ସଙ୍ଗେ ।
ଦିଗ୍‌ବିଜୟ କରି	ବଜାଇଅଛନ୍ତି
ଚୌଦିଗେ ବିଜୟ-ବାଜା,
ଅଖିଳ ଧରଣୀ—	ମଣ୍ଡଳରେ ଏକ
ଚକ୍ରବର୍ତ୍ତୀ ମହାରାଜା ।
ନୃପତିମଣ୍ଡଳ	ନତଶିର ହୋଇ
ପୂଜୁଛନ୍ତି ରଘୁପଦେ,

ରଘୁଙ୍କ ଭବନ ହୋଇଅଛି ପୂର୍ଣ୍ଣ
ଦେବଦୁର୍ଲ୍ଲଭ ସମ୍ପଦେ ।

ଉନ୍ମାଦ-ନିର୍ଝର— ଧୌତ-ରମ୍ଭାବନ-
ବିହାରୀ ବାରଣଗଣ,
ସିନ୍ଦୂରଚର୍ଚ୍ଚିତ ମସ୍ତକେ ପ୍ରାଙ୍ଗଣେ
କରୁଛନ୍ତି ବିଚରଣ ।

କୈଳାସ ଗିରି ଉପତ୍ୟକାସ୍ଥିତ
ଚମରୀ ଶ୍ୱେତ ଚାମର,
ଶୋଭା ସମ୍ପାଦଇ ଶିରେ ସଞ୍ଚାଳିତ
ହୋଇ ମହାରାଜାଙ୍କର ।

ଦୁମଣିରଶ୍ମିସ୍ପୃହା— କୁଞ୍ଜେ ଯେଉଁ ମଣି
ନାଶୁଥିଲେ ଅନ୍ଧକାର,
ପୁଞ୍ଜ ପୁଞ୍ଜ ହୋଇ ସଦା ଉଜ୍ଜ୍ୱଳିତ
କରୁଛନ୍ତି ନୃପାଗାର ।

ମହୋଦଧି ଊର୍ମି ତରଙ୍ଗକ୍ଷାଳିତ
ଉଜ୍ଜ୍ୱଳ ମୁକ୍ତାପଟଳ
ମାଳ ମାଳ ହୋଇ ରାଜପୁରେ କେତେ
ଝୁଲି ଦିଶେ ଝଲମଲ ।

ଅମରାବତୀକି ହସେ ରାଜଧାନୀ
ସୁନ୍ଦରୀ ସୁନ୍ଦରପଣେ,
ସୁଧା-ଧବଳିତ ବଦନକୁ ଚୁମ୍ବି
ସରଯୂ-ନୀର-ଦର୍ପଣେ ।

ସରଯୂ ତଟନ୍ତୁ ରମ୍ୟ ଉପବନ
ସୁବାସ ପୁଷ୍ପ ପସରା ।

ବୋଲି ଦେଉଥାଏ ନଗରୀ ଅଙ୍ଗରେ
ବହୁ ଅତି ଅନୁରାଗ ।
ବିଳାସିନୀକୁଳ ମୃଦୁଳ ଅଙ୍ଗୁଳି
ତାଡିତ ମୃଦଙ୍ଗନାଦ,
ଅଭ୍ରଙ୍କଷ ସୌଧେ ନିନାଦିତ ହୋଇ
ଘୋଷଇ କେତେ ପ୍ରସାଦ ।
ଅବିଶ୍ରାନ୍ତ ତହୁଁ ବହି ଯାଉଥାଏ
ଆନନ୍ଦର ପ୍ରସ୍ରବଣ,
ସୁଷମା-ବାଳାର ଅଟଇ ସେ ପୁର
ବିଚିତ୍ର ରଙ୍ଗସଦନ ।
ମେଦିନୀମଣ୍ଡନେ ବରମାଲ୍ୟ ଦିଅ
ଏହି ପୁରବାସୀ ଗଳେ,
ମରକତ-ବୃକ୍ଷେ ହେମ-ଲତା ପ୍ରାୟେ
ଶୋଭି ହେବୁ ଭୂମଣ୍ଡଳେ ।
କେବେ ପୁଷ୍ପବନେ କେବେ ତୁଙ୍ଗ ସୌଧ—
ଚୂଳେ ପ୍ରିୟନାଥ ସଙ୍ଗେ,
ନବ ଯଉବନ କୃତାର୍ଥ କରିବୁ
ବଳସି କୌତୁକ ରଙ୍ଗେ ।
ସରଯୂପୁଳିନେ ବିହାର ସମୟେ
ତଟସ୍ଥ ପାଦପାବଳୀ,
ମୁଗ୍‌ଧବଧୂ ଜାଣି ନବ ଅନୁରାଗେ
ଶିରେ ଦେବେ ପୁଷ୍ପାଞ୍ଜଳି ।
ସରଯୂ ଅନାଇ ମୀନ-ନୟନରେ
ବତାଇ ଲହରୀ-କର,

ସ୍ନେହବଶେ ତୋର ପଦପ୍ରକ୍ଷାଳନେ
ହେଉଥିବ ତରତର ।
ରାଜସୁତା ତହିଁ— ପ୍ରତିମା ପରାୟେ
ରହିଲେ ଅଜଙ୍କୁ ଚାହିଁ,
ଲଜ୍ଜା ଅନୁରାଗେ ମନୋଗତ ଭାବ
ପ୍ରକାଶି ପାରିଲେ ନାହିଁ ।
ସାତ୍ତ୍ୱିକ ଲକ୍ଷଣ ବାଳା-ମନୋଭାବ
କରିଦେଲା ସୁପ୍ରକାଶ,
ରଜନୀ ତମିରେ ଲୁଚି ପାରଇ କି
ବନମଲ୍ଲିକାର ବାସ !
ତା ଜାଣି ସୁନନ୍ଦା ନ ଜାଣିଲା ପରି
ବୋଲେ ରାଜହଂସଗତି,
ଅନ୍ୟ ନରପତି ସମୀପକୁ ଚାଲ
ଯିବା ବଳେ ଯେବେ ମତି ।
ତା ଶୁଣି କୁମାରୀ ସୁନନ୍ଦା ଉପରେ
କଲେ କ୍ଷେପ ଦୃଷ୍ଟିପାତ,
ବନ-ବିହାରିଣୀ କରିଣୀ ଯେମନ୍ତେ
ପାଇଲେ ଅଙ୍କୁଶାଘାତ ।
ସୁଶୀଳାମଣି ସେ ସୁନନ୍ଦା ହସ୍ତକୁ
ମାଳିକା ଦେଇ ବଢାଇ,
କଳ କଣ୍ଠସ୍ୱରେ ବୋଲେ ଯୁବରାଜ—
ଗଳାରେ ଦଅ ଲମ୍ବାଇ ।
ଅନୁଜ୍ଞାତ ହୋଇ ସୁଧାଂଶୁସ୍ୟନ୍ଦିନୀ
କୁସୁମମାଳା ତୁରିତ,

ନେଇ ସହଚରୀ ଯୁବରାଜ କୁଳେ
କରିଦେଲେ ନିମନ୍ତ୍ରିତ ।
ବାଜିଲା ବିବିଧ ମଙ୍ଗଳ ବାଜଣା
ବାଜିଲା ମଙ୍ଗଳ-ଶଙ୍ଖ,
ଉଚ୍ଚରେ ମଙ୍ଗଳ— ଶ୍ଳୋକ ଉଚାରିଲେ
ସନ୍ତୁଷ୍ଟ ଦ୍ୱିଜ ଅସଂଖ୍ୟ ।

ନୃପ-ଚିତ୍ତାକାଶ ସ୍ୱଚ୍ଛ-ଗଗନକୁ
ଘୋଟିଲା ବିଷାଦ-ଘନ,
ଅଙ୍ଗ-ହ୍ଲାଦଯୋଗେ ଅବିରଳଧାରେ
ହେଲା ସୁଧା ବରଷଣ ।

ଭାଗ୍ୟବାନ ସଦା ଭାଗ୍ୟଫଳ ଲଭେ
ଅଭାଗା ଲଭେ ଅର୍ଣ୍ଣବ,
ସାଗର ମନ୍ଥନେ କେଶବ କମଳା,
ଗରଳ ଲଭିଲେ ଶିବ ।

ନରପତିମାନେ ଶିବିରକୁ ଗଲେ
କପାଳରେ ମାରି କର,
କୋଶଳରାଜ ଗଲେ ରାଜଭବନକୁ
ସଙ୍ଗେ ଘେନି କନ୍ୟା ବର ।

ରତ୍ନଖଚିତ ପଟସ୍ତୋମାବୃତ
କରେଣୁ ପୃଷ୍ଠରେ ବସି
ଷରୀ ଧ୍ୱଜ ପଟ ନବବଧୂ ସଙ୍ଗେ
ବାଜେ ବାଦ୍ୟବଂଶୀ ।

ନଗରବାସୀଏ ଅବଗତ ହୋଇ
ବର ଶୁଭ ଆଗମନ,

ପୂର୍ଣ୍ଣ କୁମ୍ଭମାନ ତୋରଣେ ତୋରଣେ
କରଥିଲେ ସଂସ୍ଥାପନ ।
ରକ୍ତଗନ୍ଧ ବେଣ ଧରଥିଲେ ସୁଷି
ପୁର ଅଟ୍ଟାଳିକାଗୁଳିକ,
ଦ୍ୱିଲେ ସହକାର— ପଲ୍ଲବତୋରଣ
ଚକୁରପନ୍ତିକୁ ସାଜ !
ହୋଇଥାଏ ରମ୍ଭା ପାଦପ ଶୋଭିତ
ବେଳାପାର୍ଶ୍ୱେ ସ୍ଥଳପଥେ,
ମନ୍ଦାନିଳେ ମନ୍ଦେ ଦୋହଲି ଦୋହଲି
ନାଚୁଥାନ୍ତି ଅବିରତେ ।
ଯେତେବେଳେ ଗ୍ରଜା— ପଥେ ବଳେ ଅଜ
ସଙ୍ଗେ ବରଯାତ୍ରିଦଳ,
ନଗର ମଧ୍ୟରେ ଉଠିଗଲା ମହା
ଆନନ୍ଦର କୋଳାହଳ ।
ମନୋହର ବର ଦର୍ଶନ ଲାଳସେ
ପୁର-ନରନାରୀଗଣ
କୌତୁକ-ନଦରେ ମନ-ତରୀ ମେଲି
ତ୍ୱରରେ କଲେ ଗମନ ।
କୁଳବଧୂମାନେ ସୌଧ ଉପରକୁ
ଦ୍ରୁତପଦେ କଲେ ଗତି,
ମୁକ୍ତ ବସନକୁ ହସ୍ତ-ପଦ୍ମେ ଧରି
ଧାଇଁଲା କେଉଁ ଯୁବତୀ ।
ମୁଖରିତ କଲା ସୌଧଚଉଁକୁ
ଚରଣ ଭୂଷଣ ଧ୍ୱନି,

ବର ବିଜୟକୁ ମଙ୍ଗଳ-ସଙ୍ଗୀତ
ଗାଇଲ୍ ସିନା ଅବନୀ ।
ଗନ୍ଧବେଗେ କାହା ଖୋଷା ଫିଟି ଖସି
ପଡ଼ିଥିଲା ପୁଷ୍ପଗଦ୍ଧ,
ସନ୍ଧ୍ୟାବଳରୁ ଚନ୍ଦ୍ର ମାମଣ୍ଡଳ
ମୁକ୍ତ ହୋଇଗଲା ଅବା !
ସୁନୀଳ ନିର୍ମଳ ଗଗନ କୋଳରୁ
ସ୍ଖଳିତ ତାରକା ଭଲ,
କେ ଘନକୁନ୍ତଳା ସ୍କନ୍ଧୁ କବରୀରୁ
ଝସି ଯାଉଥିଲା ଫୁଲ ।
କେ ରଙ୍ଗ ଦୁକୂଳ କେହୁ ପୀତ ଚେଲ
କେବା ଶୁକ୍ଳାମ୍ବର ଶାଢୀ,
ପିନ୍ଧିଥିଲେ ତ ବରାଙ୍ଗନାମାନେ
ଟିଆହେଲେ ଧାଡ଼ି ଧାଡ଼ି ।
ନାସି ନୁହନ୍ତି ସେ ନଗର-ଲଳନା
ସୁରମ୍ୟ କୁସୁମହାର,
ମଲ୍ଲିକା ଚମ୍ପକ ସଙ୍ଗରେ ମିଶାଇ
ଗୁନ୍ଥାହୋଇଛି ମନ୍ଦାର ।
ଅଥବା ଗୋମେଦ ପଦ୍ମରାଗ ସଙ୍ଗେ
ମୁକୁତା ଗ୍ରଥିତ ମାଳ,
ଅତି ସ୍ନେହ ଭବେ ହୃଦୟ ଉପରେ
ଧରେଛି ନଗରୀ-ବାଳୀ ।
ଗବାକ୍ଷ ସକଳ ପରିପୂର୍ଣ୍ଣ ହେଲା
ଯୁବତୀ-ପଦ୍ମବଦନେ,

କୃତ୍ତିକାସ୍ତବକ ପ୍ରତିବମ୍ବ ତ ସେ
ଦିଶେ ଅଶେଷ ଦର୍ପଣେ ।

ଅନୁପମ ବର ବର ଶୋଭା ଦେଖି
ମଙ୍ଗଳ ନଗରବାସୀ,
ଆନନ୍ଦ-କଲ୍ଲୋଳ ଚମତ୍କାର ଜଳ
ଜଳଧିରେ ଗଲେ ଭାସି ।

ସ୍ତମ୍ଭୀଭୂତ ହୋଇ ରହିଲେ ବାମାଏ
ଯେସନେ ହେମ-ପ୍ରତିମା,
ତ୍ରୁଟି ମାନସାଦି ଇନ୍ଦ୍ରିୟ ସକଳ
ଆଶ୍ରେ କଲେ ଚତୁର୍ସୀମା ।

ପୁଣି ପରସ୍ପରେ କୁହାକୁହି ହେଲେ
ଆହା କେଡ଼େ ସୁକୁମାର !
ନବ ଅବତାର ଧରିଛି କି ହର—
କୋପାନଳଦଗ୍ଧ ମାର ?

ନବ ସମୁଦିତ ସୁଧାକରଜିତ
ବଦନ କେଡ଼େ ରଞ୍ଜନ ,
ନୟନଯୁଗଳେ ଦେଉଅଛି ବଳେ
ବୋଲି ସେ ଅମୃତାଞ୍ଜନ ।

କି ନବ ବୟସ ଅଳପ ଅଳପ
ଫୁଟି ଆସୁଅଛି ଜଣ,
ଆହ୍ଲାଦକର ଯଉବନ କାନ୍ତି
ପ୍ରତିଷ୍ଠିତ କରେ ଧଣ ।

ଧନ୍ୟା ଇନ୍ଦୁମତୀ ଅତି ଭାଗ୍ୟବତୀ
ଭାଗ୍ୟେ କଲେ ସ୍ୱୟମ୍ବର,

ଭାଗ୍ୟଦେବୀଙ୍କର କରୁଣା ନ ହେଲେ
ଲଭିଥାନ୍ତେ କି ଏ ବର ?

ରାଜ-ନନ୍ଦିନୀ ସେ ସହଜେ ଚତୁରୀ
ପ୍ରତିଭାଶାଳିନୀ ଧୀରା,
ନିର୍ବାଚନ କଲେ ସୃଷ୍ଟିରମାଳାରୁ
କଣ୍ଠେ ଏକମାତ୍ର ହୀରା ।

କରିବର ପୃଷ୍ଠେ ବର ବଧୂ ଘେନି
ଦିଶନ୍ତି କେଡେ ସୁନ୍ଦର ,
ପୂର୍ବାଚଳ ଚୂଳେ କାନ୍ତା ଘେନି କୋଳେ
ଉଦିତ କି ଦିନକର ?

କହୁଁ କହୁଁ ଅଇ ପରବେଶ ହେଲେ—
ରାଜାଙ୍କ ସିଂହ ଦୁଆରେ,
ଦର୍ଶକମଣ୍ଡଳ ପ୍ରହରୀ ବାରଣେ
ରହିଗଲେ ସେହିଠାରେ ।

ଅନ୍ତଃପୁରବାସୀ କାମିନୀଏ ଆସି
ସେଠାରୁ କନ୍ୟା ବରଙ୍କୁ,
ମହା ଆହ୍ଲାଦରେ ଘେନିଗଲେ ବେଗେ
ଅନ୍ତଃପୁର ଚତ୍ୱରକୁ ।

କନକ ବେଦୀରେ ତୋରଣ-ମଣ୍ଡିତ
ରତ୍ନମୟ ଆସ୍ତରଣେ,
ବସାଇଲେ ମଞ୍ଚେ ହୁଳହୁଳି ଦେଇ
ଅନ୍ତଃପୁର ନାରୀଗଣେ ।

ବର ମନେ ବର— ବର୍ଣ୍ଣିନୀ ମନ ଯା
ପ୍ରେମେ ହୋଇଥିଲା ବନ୍ଦୀ,

ଜଗତ ଜନଙ୍କୁ    ଦେଖାଇଲେ କ୍ଷଣେ
ପରସ୍ପର କର ଛନ୍ଦ ।
ଅଜ କଣ୍ଟକିତ    କରେ କୁମାରୀର
ପ୍ରବାଳପାଟଳ କର
ଘନାଇଁତ ରଶ୍ମି—    ରେଖରେ ଅରୁଣ
ସଦୃଶ ହେଲ ସୁନ୍ଦର ।

କର ସଂସ୍ପରଶେ    ପରସ୍ପର ତନୁ
ହୋଇଗଲା ରୋମାଞ୍ଚିତ,
ମଳୟେ ଯେସନ    ପାଦପ ବଲ୍ଲରୀ
ହୋଇଥାନ୍ତି ମୁକୁଳିତ ।

ହୋମ ଅନଳକୁ    ସାକ୍ଷୀ କରି ବର
କନ୍ୟା କଲେ ପ୍ରଦକ୍ଷିଣ,
ସଂକଳପ କଲେ    ଆଜୀବନ ପ୍ରୀତି—
ବନ୍ଧନ ନ ହେବ ଛିନ୍ନ ।

ଅନଳକୁ ସଦା    ପ୍ରଦୀପ୍ତ ଉନ୍ନତ
କରଇ ଅନଳ-ଶିଖା
ପତ୍ନୀ ଯୋଗେ ପତି    ସେପରି ହେବାର
ଧର୍ମନୀତି କଲେ ଶିକ୍ଷା ।

ଅନଳ ପ୍ରଭାବେ    ବରବଧୂଙ୍କର
ମୁଖ ହେଲ ସ୍ୱେଦସିକ୍ତ,
ସ୍ୱେଦେ ବହ୍ନିବିମ୍ବ    ପଡି ବଦନର
ପ୍ରଭା ହେଲ ଅତିରିକ୍ତ ।

ବସନ ଭୂଷଣ    ରତନ ପଟଳ
ଲଭି ଅନୁକୂଳ କାଳ ।

ନିଜ ନିଜ ଶୋଭା　　　　ପ୍ରଦର୍ଶନ କଲେ
　　ପ୍ରକାଶି ଭୂଷଣଜାଳ ।
ବଧୂମୁଖ ଲଜ୍ଜା　　　　ବର ବଦନର
　　ଉତ୍କୃଷ୍ଟ ପ୍ରୀତି ଲକ୍ଷଣ,
ସେହୁ ସୁଯୋଗରେ　　　　କରି ନେଉଥାନ୍ତି
　　ପରସ୍ପରେ ଆଲିଙ୍ଗନ ।
ବରବଧୂଙ୍କର　　　　ପ୍ରସ୍ଫୁଟ ରୂପ
　　ଦୁରି କରି ଦରଶନ,
ପୁରବାସିନୀଏ　　　　ନବୀନ ଆନନ୍ଦ—
　　ଆଲୋକ ଭରିଲେ ମନ ।
ସ୍ୱାଗତମଣ୍ଡଳ　　　　ଭୋଜରାଜ ନୃପ
　　ରାଜପ୍ରିୟ ବନ୍ଧୁଗଣ,
ବରବଧୂଙ୍କରେ　　　　ହରିଦ୍ରାରଞ୍ଜିତ
　　ତଣ୍ଡୁଳ କଲେ ବର୍ଷଣ ।
ତା ପରେ ତଣ୍ଡୁଳ　　　　ବରଷଣ କଲେ
　　ରମଣୀମଣ୍ଡଳ ଆସି,
କିଙ୍କିଣୀ କଙ୍କଣ　　　　ନୂପୁର-ନିକ୍ୱଣ
　　ସହିତ ହର୍ଷ ପ୍ରକାଶି ।
ଆଉ ଯାହା ଥିଲା　　　　କୁଳ ପ୍ରଥାମତେ
　　ପରିଣୟର ବିଧାନ,
ଭୋଜରାଜ ତାହା　　　　ସମାରୋହ ସହ
　　କରିଦେଲେ ସମାଧାନ ।
ତହୁଁ କେମାମଣି　　　　ପରିଜନବର୍ଗ
　　ଛାମୁରେ କରୁଣ ସ୍ୱନେ,

ଘଡ଼ଘଡ଼େ କହୁ ମେଲାଣି ମାଗିଲେ
ଲୋତକପୂର୍ଣ୍ଣ ନୟନେ ।
ବନୟରେ କର ଗୁରୁଜନଙ୍କର
ଚରଣଯୁଗେ ବନ୍ଦନ,
ପ୍ରେମ ବାକ୍ୟ କହୁ ସଙ୍ଗିନୀମାନଙ୍କ
ପ୍ରେମେ ଭଲେ ଆଲିଙ୍ଗନ ।
କାନ୍ତ ଲଭି ସୁଖୀ ପରିଜନଙ୍କର
ବିରହେ ମନ ବିରସ,
ତେମା ହୃଦୟରେ ଆନନ୍ଦ ରସରେ
ମିଶିଗଲା ଶୋକରସ ।
ଭଗିନୀ ବିଦାୟ କଲେ ଭୋଜରାଜ
ଦେଇ ବହୁବିଧ ଧନ,
ଆପେ ଟିକାଦନ ସଙ୍ଗେ ସଙ୍ଗେ ଯାଇ
ଫେରିଲେ ନିଜ ଭବନ ।
ଯୁବରାଜ ନିଜ ଦଳବଳ ଘେନି
ପ୍ରିୟା ସଙ୍ଗେ ରମ୍ୟ ରଥେ,
ବସି ନିଜ ରାଜ୍ୟ ଅଭିମୁଖ ହୋଇ
ଚଳି ଯାଉଥିଲେ ପଥେ ।
ରମଣୀରତନ ଲାଭରୁ ବଞ୍ଚିତ
ହୋଇ ନୃପତିକଳାପ,
ହୃଦୟ-କାନନେ ଈର୍ଷାନଳ ଜାଳି
କରୁଛନ୍ତି ମନସ୍ତାପ ।
ମସ୍ତକେ ଅମ୍ବର ପାଦ ଦେଇଛନ୍ତି
ଦିଗ୍‌ବିଜୟେ ରଘୁ କାଳି,

'ଅଜି ତାଙ୍କ ପୁଅ ସଭାରେ ଅମର
ବଦନେ ଘଷିଲେ କାଳି ।
ଏତେ ଅପମାନେ କେଉଁ ରୂପେ ଯାଇ
ପୁରେ ଦେଖାଇବା ମୁଖ,
ବାରମ୍ବାର ଏତେ ଲାଞ୍ଛନାକୁ ସହି
ଜୀଇବାର ବଡ଼ ଦୁଃଖ ।
ଛନ୍ନି କୁଳେ ଜନ୍ମି କାପୁରୁଷପଣେ
ଜୀଇଲେ ଜୀବନ ଯିବ,
କହ ଭବେ ଅଉ ଜୀବନ୍ମୃତ ବୋଲି
କାହାକୁ କହନ୍ତି ତେବେ ?
କନ୍ୟାଟିକ ଯେବେ ଅଜ ଯାଉଅଛି
ଅଚ୍ଛାଦ ସୈନକଜାଲ,
କପୋତ-ଦମନ ପଦ୍ୟେ ତାହାକୁ
ବାନ୍ଧ ଯେଇପିବା ବୃଲ ।
ଏକମେଳ ହେଲେ ବଣ୍ଟବଚନରେ
ଅସାଧ୍ୟ ହୁଏ ସହଜ,
ସୂକ୍ଷ୍ମ ଶଣସୂତ୍ର ମେଳ ହେଲେ ଦେଖ
ବନ୍ଧ ହୁଏ ମତ୍ତ ଗଜ ।
ଏମନ୍ତ ବଚନ ନରପତିମାନେ
ସଦର୍ପେ କଲେ ଗମନ,
ବହୁ ଦଳବଳ ସଙ୍ଗେ ମୃତବଳ
ପ୍ରତି କଲେ ଆକ୍ରମଣ ।
·ଦେଖିଲେ କୁମାର ଭୟଙ୍କରରୂପୀ
ବରଷାକାଳ ସମାନେ,

ଅସଂଖ୍ୟ ବାହୁନୀ ଘେନି ଆସୁଛନ୍ତି
କାଦ୍ୱେଧୀ ନରେଶମାନେ ।
ଖଡ୍ଗ ତଲବାର ଚପଳା ଝଲକେ,
ସ୍ତନିତ ଗଜଗର୍ଜନ,
ପତାକା ଉଡ୍ଡୀନ ବକପନ୍ତି, ସେନା—
ଗର୍ଜନ ଦୁନ୍ଦୁଭି-ସ୍ୱନ ।

କେତକୀ-ଶାଣିତ . କରବାଳପୁଞ୍ଜୀ,
ଧନୁ ଇନ୍ଦ୍ର ଶରାସନ,
ଘେନି ଅଜ-ସ୍କନ୍ଧ ଗ୍ରାସ ଲାଳସରେ
ଧାଉଁଛନ୍ତି ସୈନ୍ୟ-ଘନ ।

ଅଜ-ସେନାନଲେ ବର୍ଷଣ କରବେ
। ଅବିରଳ ଶରଧାର,
ଜାଣି ଯୁବରାଜ ଅମାତ୍ୟଙ୍କୁ ଦେଲେ
ପ୍ରିୟାସଂରକ୍ଷଣ ଭାର ।

ଧରି ଧନୁଃଶର ହେଲେ ଅଗ୍ରସର
ରଣସ୍ଥଳୀକି ଆପଣେ,
ନିଜ ବାହୁନୀକି ଉତ୍ତେଜନା କରି
କହିଲେ ହେ ବୀରଗଣେ !

ଦେଖ ଦେଖ ରିପୁ, ଧାଇଁ ଆସୁଅଛି
ଅତତାୟୀ-ଅକୂପାର,
ଭୁଜବଳ-ପୋତ ଅବଲମ୍ବନରେ
ଆସ ହୋଇଯିବା ପାର ।

ପୋତ ମଜ୍ଜନକୁ ଭୟ ନ କରିବ
ଅଜ ଯହୁଁ କର୍ଣ୍ଣଧାର,

ପ୍ରାଣପଣେ ରଣେ   ଅନ୍ତସର ହୋଇ
ରିପୁବଳ ବେଗେ ମାର ।
ସଂଗ୍ରାମରେ ନାଶ   ହେଲେ ସ୍ୱର୍ଗବାସ,
ଜିତିଲେ ଭୋଗ ସମସ୍ତ,
ପଶ୍ଚାତ୍‌ପଦ ହେଲେ   ଅପଯଶ ଲଭି
ସହିବେ ନରକଗତ ।
ଢଳୁଁ ଢଳୁଁ ବେଳ,   ଦଳେ ଲାଗିଗଲେ
ଅତି ଭୟଙ୍କର ରଣ,
ରଥୀ ସଙ୍ଗେ ରଥୀ   ପଦାତି ପଦାତି
ଅଶ୍ୱାରୋହଣେ ଅଶ୍ୱାରୋହଣ ।
ସାଦିବର ସଙ୍ଗେ   ସାଦୀଏ ମୁଝିଲେ
କରେ ଧରି କରବାଳ,
ସମର-କ୍ଷେତ୍ରକୁ   ଭୂମିରେ ଅଭ୍ରାନ୍ତ
କରିଦେଲେ ଶରମାଳ ।
ଯୋଦ୍ଧୃଗଣ ରହି   ଅସ୍ତ୍ରଶରଜାଳ
ବାରି ତ ପାରିଲେ ନାହିଁ,
ଆପେ ଆପଣାର   ବଳ ସଙ୍ଗେ ରଣ—
ରଙ୍ଗେ ମାତି ଗଲେ କାହିଁ ।
ନୃପଗଣ ସଙ୍ଗେ   ମୁଝିଲେ ନିଃଶଙ୍କେ
ଏକା ଅଭି ମହାବଳୀ,
ଦନ୍ତାବଳ-ପୃଷ୍ଠେ   କେଶରୀ ପରାୟେ
ରିପୁ ଦେଉଥାନ୍ତି ଦଳି ।
କେଣେ ଧନୁଷ୍ଧର   କେଣେ ଖଡ୍ଗପାଣି
କେଣେ କେଣେ ଧରି ଗଦା,

ପ୍ରହାର ଘାତରେ ରିପୁ-କାନନକୁ
କରି ଦେଉଥାନ୍ତି ପଦା ।
ସଙ୍ଗଣ ଥରେ ଥରେ ରୌଦ୍ରଗରୁ
ବେଡି ହୋଇ କୋପଭର,
ଅଜଙ୍କ ଉପରେ ଅବିଚ୍ଛିନ୍ନଧାରେ
ବରଷାଉଥିଲେ ଶର ।
ଅଜ ପ୍ରହାରରେ ଶତଖଣ୍ଡ କରି
ଅଗତ ମାର୍ଗଣାବଳୀ,
ଅପେ ପରଚଣ୍ଡ ଆଶୁଗରେ ଛାଇ
ଦେଉଥିଲେ ରଣସ୍ଥଳୀ ।
ଏହିରୂପେ ବେନ୍ଦୁଁ ବେଳ ଲାଗିଗଲା
ସମର ଭୀଷଣତର,
ଦିଗ ଅନ୍ଧାରିତ ଦିଶୁଥିଲା ଏକା
ଆଶୁଗପଞ୍ଜ ମାତର ।
ଥରେ ହୋଇଗଲା ରଣସ୍ଥଳ ଲୋମ—
ହରଷଣ ରଙ୍ଗାଳୟ,
ଗାଉଥିଲେ ଗୀତ ଗଜ-ବାଜିଗଣେ
ଉଚ୍ଚେ କରି ତାନ ଲୟ ।
ବାଉଥିଲେ ଧନୁ— ବୀଣା ବୀରଗଣେ
ଭଳାଙ୍କର ହୁଏ ନାଚ,
ଦେଖୁଥିଲେ ତାହା ଦିଗଙ୍ଗନାମାନେ
ଘେନି ବେନିକୁଳ ଥାଚ ।
ଥରେ ହେଉଥାଏ ପ୍ରବଳ ବାହିନୀ
ଭୟାବହ ପ୍ରବାହିନୀ,

ବାରଣସଂହତ ଶିଳାବକ୍ଷମରେ
ଘୋର ହୁଙ୍କାରଦାୟିନୀ ।
ହୁଂକାର ଗର୍ଜିତ ଘନ ରକ୍ତସ୍ରୋତ
ଫେନିଳ ଶିରସ୍ତ୍ରଜାଳେ,
ଚଞ୍ଚଳ ଭ୍ରମରେ ଦେଖୁଥିଲେ ତହୁଁ
ଅସି-ଛୁରି-ମୀନମାଳେ ।

ବୀରଗଣ ଦମ୍ଭେ ତରବାର ଅଗ୍ରେ
ଅଗ୍ରେ କରି ନୃପ-ତସ୍ୱ,
ରିପୁ-ଚଣ୍ଡ ମଧ୍ୟେ ବାହୁ ନେଉଥିଲେ
ମାର୍ଗଣ-କ୍ଷେପଣୀ ଧରି ।

ପୁଣି ଅକୁ ଅଙ୍ଗେ ଶର ବୃଷ୍ଟି କଲେ
ଅଗଣିତ ଗଜବୀର,
ଯୁବରାଜଙ୍କର ଗଭୀର ହୃଦୟ
ନ ହେଲା ତିଳେ ଅଧୀର ।

ଆପେ ଛାଡି ଦେଲେ ପ୍ରସ୍ୱାପନ ବାଣ,
ବାଣବର ବେଗେ ଯାଇ,
ସମରବ୍ୟଥିତ ଗଜସେନାବୃନ୍ଦ
ନିଦ୍ରାରେ ଦେଲ ମଜାଇ ।

ନିଦ୍ରା ଭଜିଲ କେ ସ୍ୟନ୍ଦନ ଉପରେ
କେହୁ ଗଜ-ବାଜି-ସ୍କନ୍ଧେ,
କେ ଅବା ଲୋହିତ— ପ୍ଲାବିତ କୋମଳ
ଧରଣୀତଳେ ସୁଛନ୍ଦେ ।

ରଣ ଜୟ କରି ଯୁବରାଜ କଲେ
ଶଙ୍ଖନାଦ ଘନ ଘନ,

ନାଚଲେ ତାଙ୍କର ସୈନ୍ୟଜନଙ୍କର
ହୋଇ ହରଷିତ ମନ ।
ଅସ୍ତ୍ର-ପରବଳ ବସ୍ତର ନ କର
କ୍ରୋଧବଶ ହେଲେ ଜନ,
ଏହିରୂପେ ମହା— ସଙ୍କଟ-ସାଗର—
ଗର୍ଭେ ହୁଅନ୍ତି ପତନ ।
ସୁଷୁପ୍ତି-ଜଡିତ ହୋଇ ପଡିଥିଲେ
ସର୍ବ ରାଜସେନାଗଣେ,
ଚାହିଁଥିଲେ ଅଜ ଅକ୍ଲେଶରେ ନାଶ
କରିଥାନ୍ତେ ସେହିକ୍ଷଣେ ।
ବଳବନ୍ତଠାରେ ବଳବନ୍ତ ସିନା
ପ୍ରକାଶଇ ପରାକ୍ରମ,
ବଳହୀନଠାରେ ବଳ ଦେଖାଇବା
ନୁହଇ କ୍ଷତ୍ରିୟ ଧର୍ମ ।
ନିଦ୍ରିତ ନିରସ୍ତ୍ର ଶରଣ-ଆଗତ
ଅବଳା ବୃଦ୍ଧ ବାଳକ,
ଏମାନଙ୍କୁ ବଳେ ନାଶ କଲେ ଲଭେ
ବୀରଯଶରେ କଳଙ୍କ ।
ନୀତିପରାୟଣ ନୀତି ଅବଲମ୍ବି
ରକ୍ଷା କଲେ ପର ଦଳ,
ପ୍ରତିବନ୍ଧକ ନ ଥିଲେ ହେଁ କୂଳକୁ
ଲଙ୍ଘେ କି ଜଳଧି ଜଳ ?
ମହତ ଜନର ଦୟା ସବୁଠାରେ
ସମେ ହୁଏ ବିତରିତ,

କର୍ତ୍ତକ ମସ୍ତକୁଁ ନ କରଇ ତରୁ
ପ୍ର ଛାୟା ଅପସାରିତ ।
ପରଦୁଃଖ ଦେଖି ଦୟାଳୁ ହୃଦୟ
ସହଜରେ ହୁଏ ଦୁଃଖୀ,
ତେଣୁ ରଣକ୍ଲାନ୍ତ ସୈନ୍ୟ ଦଳକୁ
ସ୍ପର୍ଶ ଦେଇ କଲେ ସୁଖୀ ।
ପରେ ପ୍ରପୀଡ଼ିତ ହେଲେ ହେଁ ମହନ୍ତ—
ଭାବ ସଦା ଅକର୍କଶ,
ନ ହେଲେ କି ଇକ୍ଷୁ ନିଷ୍ପେଷିତ ହୋଇ
ଢାଳନ୍ତା ମଧୁର ରସ ?
ସୈନ୍ୟ-ସାଗରକୁ ମନ୍ଥି କଉଶଳେ
ରଣବିଶାରଦ ଅଜ,
ହର୍ଷେ ବାକେ କଲେ ପ୍ରିୟା ସମୀପକୁ
ପଦ୍ମ ବନ୍ଧୁ ଯେହ୍ନେ ଗଜ ।
କାନ୍ତ ରଣେ ରତ ବୁଝି ନବକାନ୍ତା
ନେହ୍ନୁଁ ବହୁଥିଲା ନୀର,
ନିଶା ଅବସାନେ ଗଗନମଣ୍ଡଳୁଁ
ଝରଇ ଯେହ୍ନେ ଶିଶିର ।
ସମରବିଜୟୀ ପତିଙ୍କି ଅନାଇ
ଲଭିଲେ ଅମୂଲ୍ୟ ସୁଖ,
ପଦ୍ମିନୀ-ଯୁବତୀ ଦର୍ଶନ କଲା କି
ମେଘମୁକ୍ତ ରବି-ମୁଖ ।
ଯୁବତୀଜ ପ୍ରିୟା ବଦନକୁ ଚାହିଁ
ବୋଲନ୍ତି, ଗୋ ବିମ୍ବାଧରି,

ଦେଖ ଦେଖ ଏରେ  ସମରକ୍ଷେତ୍ରକୁ
କଟାକ୍ଷ ସ୍ଖଳନ କର ।
ତୋହ୍ନ ପାଇଁ କେତେ  ନୃପତିନନ୍ଦନ
ଦମ୍ଭେ ଆସି କ୍ରୋଧବଶେଁ,
ଅତୁଲଧରଣୀ—  ପଣେ ପ୍ରାଣ ଦେଲେ
ରଣ-ଯଜ୍ଞେ ହୋଇ ପଶୁ ।

କେତେ କେତେ ସେନା  ପତଙ୍ଗମ ହେଲେ
ପ୍ରଦୀପ୍ତ ସମରାନଳେ,
ଏ ବାରତା ପାଇ  ପରିଜନେ ତାଙ୍କ
ଭାସିଯିବେ ଶୋକ-ଜଳେ ।

କେତେ ନରପତି  କୁସୁମରଚିତ
କୋମଳ ପଲ୍ୟଙ୍କ ଛାଡ଼ି,
ଖଗଗଣ ସଙ୍ଗେ  ଲୋହିତାକ୍ତ ମୁଖେ
ଶୋଇଛନ୍ତି ମୁହଁ ମାଡ଼ି ।

ଶୁଣି ଇନ୍ଦୁମତୀ  ତଳକୁ ବଦନ
କଲେ ମନ୍ଦ ମନ୍ଦ ହସି,
ଲଜ୍ଜାବଶେଁ ସଖୀ—  ବଦନେ କହିଲେ
କାନ୍ତେ ବଳ ପରଶଂସି ।

ଏହିରୂପେ ରଘୁ  ଛେଦିତ ନାକରେ
ଲବଣ ଲଗାଇ ଅଜ,
ବାଜେ କଲେ ନିଜ  ପୁର ଅଭିମୁଖେ
ଉଡ଼ାଇ ବିଜୟଧ୍ୱଜ ।



# ଉତ୍ତର ଭାଗ



କୁମାର-ବିରହେ ବ୍ୟାକୁଳହୃଦୟେ
ଅଯୋଧ୍ୟାର ରାଜରାଣୀ
ଦୁଃଖେ କାନ୍ଦୁଛନ୍ତି ସଖୀ ପାଶେ ସ୍ଥିତ—
ଉଦନ୍ତ କିଛି ନ ଜାଣି ।

ନିଶା ଅବସାନେ ଦେଖିଲି ଗୋ ଆଜି,
ସ୍ୱପ୍ନ ସୁବିସ୍ମୟକର,
ସ୍ୱପ୍ନ ଏତେବେଳେ ତନୁ ଥରେ ଯଥା
ସମୀରେ ରମ୍ଭାପତର ।

ମୃଦୁଳ ବପୁ ମୋ ସୁନ୍ଦ ଆସୁଥିଲା
ଅଶ୍ୱେଧ୍ୱ ଶ୍ୱେତ ବାରଣ,
ଟାଳୁଥିଲି ଶିରେ ପରସ୍ପରି କର
ଶ୍ୱେତଚ୍ଛମର ଧାରଣ ।

ବେଣିପାର୍ଶ୍ୱେ ପୁଣି ଧବଳ ଚମର
ଉଡୁଥିଲା ଫରହର;
ମୋ ସୁନ୍ଦ ଅଙ୍କରେ ଶୋଭୁ ପାଉଥିଲା
ଶୁକ୍ଳାମ୍ବର ବଧୂବର ।

ବିଶାଳ ବକ୍ଷରେ ଝୁଲୁଥିଲା ସ୍ୱରୁ
ଧବଳ କୁସୁମହାର,
ନୀଳା ପୁଣ୍ଡରୀକ ତଳା ହେଉଥିଲା
ହସ୍ତେ ନବ ଅବଳାର ।

ଶିରେ ପଡ଼ୁଥିଲା ବିଦ୍ୟାଧର କର—
ବିମୁକ୍ତ କୁସୁମରାଶି,
ବୁହା ମୋ ନୟନ— ମୁଗ ଯାଉଥିଲି
ସୁଖ-ସଲିଳରେ ଭାସି ।

ଅଉ ଥରେ ପୁଣି ଦେଖିଲି ଚୌଦିଗେ
ଆକ୍ରମି ନୃପତିଗଣ,
ଏକାକୀ ମୋ ଶିଶୁ— କୁମାର ସଙ୍ଗରେ
କରୁଥିଲେ ଘୋର ରଣ ।

ପର ପରଚଣ୍ଡ ବାଣେ ଫୁଟି ତାର
ସୁକୁମାର କଳେବର,
ଅନର୍ଗଳବାହୀ ରକ୍ତ ପ୍ରବାହରେ
ହୋଇଥିଲା ଜରଜର ।

କାରୁଣ୍ୟ-ସାଗର ଅବାଧ୍ୟ ତରଙ୍ଗ
ପରମସ୍ୱ ଉଠି ଖରେ
ଧୈର୍ଯ୍ୟ-ପୋତ ମୋର ଗ୍ରାସିଦେଲା ସଖି,
ଚୂର୍ଣ୍ଣି ଚୂର୍ଣ୍ଣି କ୍ଷଣକରେ ।

ଅକସ୍ମାତେ ମୋର ସୁଷୁପ୍ତି ଭଞ୍ଜନ
ହୋଇଗଲା ସେହିକ୍ଷଣି,
ଉଠି ପଲଙ୍କରେ ବସି ଅନାଇଲି
କାହିଁ ସେ କୁମରମଣି ।

ନବ ବିକଶିତ ନୀପ ପ୍ରାୟେ ତନୁ
ହୋଇଥିଲା କଣ୍ଟକିତ,
ସ୍ୱିନ୍ନ ହେଲା ପୁଣି ନଶାନ୍ତେ ଯେସନ
ପଦ୍ମିନୀ ଶିଶିରସିକ୍ତ ।

ସେଦିନ ବେଳରୁ ନୟନରେ ଆଉ
ନିଦ୍ରା ତ ଆସିଲା ନାହିଁ,
କୁମାର ପ୍ରସଙ୍ଗ ଭାବନାରେ ଏକା
ବସିବସି ଗଲା ପାହି ।
ଅଦ୍ଭୁତ ସ୍ୱପନ ଦେଖିଲା ବେଳୁ ମୋ
ମନ ହେଉଅଛି ଘାଣ୍ଟି,
ଶରଦିନ୍ଦୁ-ଚନ୍ଦ୍ର କୁମାରଙ୍କୁ ସ୍ମରି
ହୃଦୟ ଯାଉଛି ଫାଟି ।
କେମନ୍ତେ ଦେଖିବି ଜୀବଜୀବନର
ଅମଳ କମଳ-ମୁଖ,
କେବେ ଆସି ମୋର ନୟନପ୍ରତିମା
ଦୂରେ ଛଡ଼ାଇବ ଦୁଃଖ ।
ନିସର୍ଗ-ସୁନ୍ଦର ପୁତ୍ର ମୋ ଯାଇଛି
ସ୍ୱୟମ୍ବରସଭାସ୍ଥଳ,
ରାଜାଗଣ ସର୍ବେ ଅସୂୟାରେ ଅବା
ବାନ୍ଧିବା କଲେ ଅମଙ୍ଗଳ ।
ଅଳପ ବୟସ ସରଳ ସ୍ୱଭାବ
ଅଟଇ ମୋର କୁମାର,
ରାଜାଗଣେ ତାରେ କପଟ କଲେ
କେମନ୍ତେ ହୋଇବ ପାର ।
ଅନାଥର ନାଥ ଅରକ୍ଷ-ରକ୍ଷକ
ଅହେ ପ୍ରଭୁ ଚକ୍ରଧର,
ଚକ୍ର ଅସ୍ତ୍ରବଳେ ଅସହାୟ ମୋର
ନନ୍ଦନଙ୍କୁ ରକ୍ଷା କର ।

ଏହିରୂପେ ଖିନ୍ନ— ହୃଦୟା ମହିଷୀ
ମିତ୍ରସଖୀ ପାଶେ କହି,
ନିଦାଘ-ଶଇଳ ପ୍ରାୟେ ବସିଥିଲେ
ହୃଦୟରେ ତାପ ବହି ।

ବଦନମଣ୍ଡଳ ଥୋଇଥିଲେ ସ୍ଥିର
ଦେଇ ସବ୍ୟେତର କରେ,
ପର୍ଯ୍ୟୁଷିତ ମ୍ଳାନ— କୁନ୍ଦ କୁସୁମ କି
ଡାଳିଅଛି ପଲ୍ଲବରେ ।

ସଭା-ମଣ୍ଡପରେ ସଭ୍ୟରାଜବୃନ୍ଦ
ଘେନି ରଘୁ-ନରବର,
ବସିଥିଲେ, ଏଥି— କାଳେ ଉପଗତ
ଯୁବରାଜଙ୍କ ଦୂତର ।

ନତମସ୍ତକରେ କର ଯୋଡ଼ି ବନ୍ଦି
ମହାରାଜା ପଦ୍ମପାଦ,
ଆନନ୍ଦଗଦ୍‌ଗଦ— ବଚନେ କହିଲା
ବିଦର୍ଭପୁର ସମ୍ବାଦ ।

ଜୟ ଦେବ ମହିମା ରାଜରାଜେଶ୍ୱର
ଶୁଭେ ହେଲା ସ୍ୱୟମ୍ବର,
ତ୍ରିଲୋକ ସୁନ୍ଦରୀ ବରମାଲ୍ୟ ଦେଲେ
ଗଳେ ଯୁବରାଜଙ୍କର ।

ଆସିଥିଲେ କେତେ କେତେ ନରପତି
ଶୁଷ୍କ କରିଦେଲେ ମୁଖ,
ନ ଲଭି ବିଦର୍ଭ— ଗଗନ-ସୁନ୍ଦର—
ଚନ୍ଦ୍ରମା-କୃପା-ମୟୂଖ ।

ମହା ଆଡ଼ମ୍ବରେ ଉଦ୍‌ବାହ ବିଧାନ
ଶୁଭେ କରି ସମାପନ,
ବଧୂରତ୍ନ ଘେନ ଯୁବରାଜ ପୁରେ
କରୁଥିଲେ ଆଗମନ ।

ସହି ନ ପାରି ତା ଦଳବଦ୍ଧ ହୋଇ
ମସ୍ତରୀ ନୃପତି ସର୍ବେ,
ଆସି କୁମାରଙ୍କୁ ପଥେ ଆକମିଲେ
ଯୁଯୁତ୍ସାରେ ମହାଗର୍ବେ ।

ଏକା ଯୁବରାଜ— ଘୃସ୍ତେ ମହାରଣେ
ହାରିଲେ ରାଜାସକଳ,
ମୃଗରାଜଶିଶୁ ସଙ୍ଗେ ରଣ କଲେ
ଜିତିବେ କି ଛାଗପଲ ?

ସେମାନଙ୍କ ଶିରେ ବାମ ପାଦ ଦେଇ
ପରତାପୀ ଯୁବରାଜ
ବିଜେ କରୁଛନ୍ତି, ଜାହ୍ନବୀକୂଳରେ
ତମ୍ବୁ ରହିଥିବ ଆଜ ।

ଏ ବାରତା ଶୁଣି ରଘୁ ନୃପମଣି
ଲଭିଲେ ମୁଦ ଅପାର,
ଅକସ୍ମାତେ କେବା ଶ୍ରୁତିଯୁଗଳରେ
ଢାଳିଦେଲା ସୁଧାଧାର ।

ଅମାତ୍ୟଗଣଙ୍କୁ ଆଜ୍ଞା ଦେଇ ବେଗେ
ନଗର ମଣ୍ଡନ ପାଇଁ,
ରାଣୀଙ୍କୁ କହିଲେ ଶୁଭସମାଚାର
ଅନ୍ତର୍ବନକୁ ଯାଇ ।

ସୁଖ-ସାମ୍ରାଜ୍ୟ ସୀମା ନ ରହିଲା ତାହା
ଶୁଣି ମହାରାଣୀଙ୍କର,
ଆତପତାପିତ ଜନ ଶିରେ ଯଥା
ପଡ଼ିଲା ଶିର-ନିର୍ଝର ।

ସେ ବାରତା ପୁଣି ବିଘୋଷିତ ହେଲା
ନଗରେ ଆହା କି ସାହା,
ପୁରବାସୀଙ୍କର ଆନନ୍ଦରେ ଅବା
ଇୟତ୍ତା ରହିଲା ନାହିଁ ।

ଅଯୋଧ୍ୟା ନଗର ହୋଇଗଲା ସ୍ୱଚ୍ଛ
ଆନନ୍ଦ-କୌମୁଦୀମୟ,
ସମସ୍ତଙ୍କ ମୁଖେ ବିଘୋଷିତ ହେଲା
ଜୟ ଯୁବରାଜ ଜୟ ।

ଏ ବାରତା ଶୁଣି ସାମନ୍ତସକଳ
ମହାଡ଼ମ୍ବର ଦେଖାଇ,
ସମବେତ ହୋଇ ଗଲେ କୁମାରଙ୍କ
ପାଖେ ଟିକି ଆଣିବା ପାଇଁ ।

ଅଗତ ସାମନ୍ତ— ମନ୍ତ୍ରେଲେ କୁମାର
ହୋଇଣ ଅଭିନନ୍ଦିତ,
ସାମରିକ କଥା କହି କହି ତାଙ୍କୁ
ପୁରେ ହେଲେ ବିରାଜିତ ।

ପୁରବାସୀଙ୍କର ନୟନରେ ଦେଇ
ସୁଦୁର୍ଲଭ ଆହ୍ଲାଦ,
ବଧୂ ସଙ୍ଗେ ଯାଇ ଭକ୍ତିରେ ବନ୍ଦିଲେ
ଜନକ ଜନନୀ ପାଦ ।

ନବବଧୂସଙ୍ଗୀ କୁମାରଙ୍କୁ ଦେଖି
ରାଜାରାଣୀ ହର୍ଷଭର,
ପୌର୍ଣ୍ଣମାସୀ ଶୋଭା ଚନ୍ଦ୍ରମାମଣ୍ଡଳ
ଦର୍ଶନେ ଯଥା ସାଗର ।

କେତେ କାଳ ପରେ କୁମାରଙ୍କୁ ରାଜା
ରାଜ୍ୟ କରି ସମର୍ପଣ,
ଆପେ ବାନପ୍ରସ୍ଥ ଧର୍ମ ଅବଲମ୍ବି
ସ୍ୱର୍ଲୋକେ କଲେ ଗମନ ।

ଅଜ ବଧୂ ହେଲେ କନକ-ପ୍ରଦାତ୍ରୀ
ଅଖଣ୍ଡ ମେଦିନୀ ଧୁର,
ବିଦ୍ୟା-ଅଲଙ୍କୃତ ହୃଦେ ନ ରଖିଲେ
ତିଳେ ରାଜଅହଙ୍କାର ।

ଅପକ୍ଷପାତରେ ଅପତ୍ୟ ସ୍ନେହରେ
ପରଜାମଣ୍ଡଳ ପାଳି,
ପ୍ରଚଣ୍ଡପ୍ରତାପ— ବୈଶ୍ୱାନରେ ଶତ୍ରୁ—
ତୃଣରାଶି ଦେଲେ ଜାଳି ।

ଅଖଣ୍ଡିତ ନ୍ୟାୟ ସୁଧାକର ସୁଧା—
ଧବଳ ଚନ୍ଦ୍ରାତପ,
ରାଜ୍ୟରୁ ତାଙ୍କର କରୁଥିଲା ଦୂର
ଅନୀତି-ତିମିରମାଳ ।

ପରଶ୍ରୀକାତର କଣ୍ଟକଣ୍ଟକଙ୍କର
ପର ଛିଦ୍ରକଥାମାନ,
କର୍ଣ୍ଣ-ପଥେ ପଶି ପାରୁ ତ ନ ଥିଲେ
ହୃଦେ କି ପାଇବେ ସ୍ଥାନ ?

ଦୁଃଖୀ ପ୍ରଜାଙ୍କର ଦୁଃଖ-କର୍ଜରିତ
ଗୁହାରିମାନ ଶୁଣିତ,
ଦୟା-ଉତ୍ସପୂର୍ଣ୍ଣ ହୃଦ-ପ୍ରାସାଦରେ
ହେଉଥାଏ ନିନାଦିତ ।

ପ୍ରଜା-ଉପକାର କାରଣେ ସଞ୍ଚିତ
ଭଣ୍ଡାରଟି ଅଜଙ୍କର,
ବଞ୍ଚକ ବଞ୍ଚନା— କଥାରେ ନ ଯାଏ
କପର୍ଦ୍ଦ ଏକମାତର ।

ଭୋଗାସକ୍ତ ନୋହି ସଦା ଜାଗରିତ
ପ୍ରଜାଙ୍କ ହିତସାଧନେ,
ପ୍ରଜା-ସୁଖ ଦେଖି ଆପେ ମହାସୁଖୀ
ହେଉଥିଲେ ସ୍ୱଚ୍ଛମନେ ।

ରଘୁ-ବିରଚିତ ରଘୁସୁଶାସନ—
ପାଳିତ ପରଜାଗଣ,
ଅଜ ସ୍ୱଇଚ୍ଛାରେ ରଘୁଙ୍କ ବିରହ
କରିଦେଲେ ବିସ୍ମରଣ ।

ସର୍ବେ ମୁକ୍ତକଣ୍ଠେ ଘୋଷୁଥାନ୍ତି ସଦା
ଅଜଙ୍କ ନିର୍ମଳ ଯଶ,
ନାହୁଁଥିଲେ ଏକା ଆଶ୍ରୟାଶ୍ରିତରୁ
ଆଳସ୍ୟ ସର୍ବ ରାକ୍ଷସ ।

ଲମ୍ପଟ୍ୟ ଚଉର୍ଯ୍ୟ ଆଦି ସ୍ଥାନଚ୍ୟୁତ
କୃତ୍ରିମ ରୂପ ଦେଖାଇ,
ଅଜ ରାଜ୍ୟେ ଜନ— ମାନସକୁ କେବେ
ଭୁଲାଇ ପାରନ୍ତି ନାହିଁ ।

ଇନ୍ଦୁମତୀଠାରେ ଅଚଳ ସ୍ନେହ
ଅଜ କଲେ ସଂସ୍ଥାପନ,
ଦମ୍ପତି-ପ୍ରଣୟ— ବିଳାସରେ ସୁଖେ
ସମୟ କଲେ ଯାପନ ।

କେତେକାଳ ପରେ ଇନ୍ଦୁମତୀଙ୍କର
ହୋଇଣ ଗର୍ଭସଞ୍ଚାର,
ଯଥାସମୟରେ ଜାତ ହେଲେ ଏକ
ସୁନ୍ଦର ନବ କୁମାର ।

ଦଶଦିଗେ ରଥ ଗମିବ ଏହାର
ରାଜା ଏହା ଭାବି ମନେ,
ଦଶରଥ ନାମେ ଖ୍ୟାତ ହେଉ ସୁତ
ବୋଇଲେ ବିଶ୍ୱଭୁବନେ ।

ଶୁକ୍ଳେ ଶଶିକଳା ପ୍ରାୟେ ଦିନୁଁ ଦିନ
କୁମାର ହେଲେ ବର୍ଦ୍ଧିତ,
ବୃଦ୍ଧି ହେଉଥାନ୍ତି ଜନକ ଜନନୀ
ଅତିଶୟ ଆନନ୍ଦିତ ।

ଧରଣୀ-ରାଣୀର ସେବା ଅର୍ଥେ ଆସି
ବସନ୍ତ ପ୍ରବେଶ ହେଲା,
ସ୍ନିଗ୍ଧ କୋମଳ ପଲ୍ଲବ-ଦୁକୂଳେ
ଆଉ ତନୁ ମଣ୍ଡିଦେଲା ।

ଲଲାଟରେ ଲତା ଅଳକାବଳୀ କି
ଅତି ଯତନରେ ଆଙ୍କି,
ମଣ୍ଡିଦେଲା ଶିରେ ନବ ବିକଶିତ
ମଞ୍ଜୁଳ କୁସୁମରାଜି ।

ରଜନୀରେ ଦିଏ ଲମ୍ବାଇ ହୃଦୟେ
ହିମବିନ୍ଦୁ-ମୋତିମାଳୀ,
କର ପ୍ରସାରି ଯା ହରି ନେଉଥାନ୍ତି
ପ୍ରଭାତରେ କରମାଳୀ।

ଦକ୍ଷିଣସାଗର— ତରଙ୍ଗ-ଶୀକର—
ସିକ୍ତ-ଶୀତ-ମୃଦୁ-ବାତେ,
ମଳୟ-ଶଇଳୁ ସୁଗନ୍ଧ କି ହରି
ବହୁଥାଏ ମନ୍ଦଭାବେ।

ଗାଇଲେ ସଙ୍ଗୀତ ମଧୁବ୍ରତ ମଧୁ—
କଣ୍ଠଏ ମଧୁରସ୍ୱରେ,
ବନ ଉପବନ ମଧୁରିତ ହେଲା
କଳକଣ୍ଠ କଳସ୍ୱରେ।

ମହୀପତି ଅଜ ମହୀ-ମଣ୍ଡଳର
କମନୀୟ ଛବି ହେରି,
ମହୀ-ରନ୍ଧ୍ରାସ ପ୍ରିୟା ସଙ୍ଗେ ଗଲେ
ଉଦ୍ୟାନ-ବିହାର ପାଇଁ।

ପ୍ରେମାଳାପେ ଭ୍ରମି ଭ୍ରମୁଁ ସେ ଦମ୍ପତି
ପୁଷ୍ପବନେ କୁତୂହଳେ,
ପୁଷ୍ପହାର ଏକ ଗଗନୁଁ ପଡ଼ିଲା
ଇନ୍ଦୁମତୀ ବକ୍ଷଃସ୍ଥଳେ।

ସେ ଦିବ୍ୟ କୁସୁମ— ହାର ଦରଶନ
ମାତ୍ରେ ଇନ୍ଦୁମତୀଙ୍କର,
ପ୍ରାଣ-ବିହଙ୍ଗମ ଉଡ଼ିଗଲା, ତନୁ
ପଡ଼ିଲା ଧରା ଉପର।

ଛିନ୍ନମୂଳ ତରୁ ପଶ୍ଚିମେ ଭୂମିରେ
ପଡିବାରୁ ପ୍ରାୟ ଛାୟା,
ଜ୍ଞାନଶୂନ୍ୟ ହୋଇ ପଡିଲେ ନୃପତି
କାୟା ସଙ୍ଗେ ଯଥା ଛାୟା ।
କିଛିକ୍ଷଣେ ଜ୍ଞାନ ଲଭି ନରପତି
ପାରିଷଦ ଯତନରେ,
ସତ୍ତ୍ୱରେ ଦେଖିଲେ, ଜ୍ଞାନ ନାହିଁ ପ୍ରାଣ—
ସଙ୍ଗିନୀ ଅପଘନରେ ।

ଝଟକନ୍ୟାଟକ— ତନୁ ଦଶୁଅଛି
ନଷ୍ଟ ଭ ନରଛଟସ୍ୱ,
ଅକସ୍ମାତେ କିବା ହୋଇଗଲା ହେମ—
ପ୍ରତିମା ପାରଦମୟ ।

ସସମ୍ଭ୍ରମେ ଉରେ କର ପକାଇଲେ
ଲାଗିଲା ଅତି ଶୀତଳ,
ଅନାବୃତ ସ୍ଥାନେ ଥିଲେ ଯଥା ଶୀତ
ନଶାନ୍ତେ ଲୌହଶାବଳ ।

ଦେଖିଲେ ବଦନ— ମଣ୍ଡଳେ ନାହିଁ ତ
ପୂର୍ବତନ ସ୍ମିତଭାବ,
ମୁଦ୍ରିତ ଖଞ୍ଜନ— ଗଞ୍ଜନ ନୟନ
ଗଣ୍ଡ ଭାଲ ପାଣ୍ଡୁଭାବ ।

ନାସିକାରେ କର ନବେଶି ଦେଖିଲେ
ନ ଆସଇ ପ୍ରାଣବାୟୁ,
କୋଳେ ଧରି ଉଚେ ବଳପିଲେ ଶୋକ
ସମ୍ଭର ନ ପାରି ଆଉ ।

ଅହା ବସ୍ତନରେ ସରଳ-କୋମଳ—
ହୃଦନ୍ଥା ସୁଦସ୍ତାବତ !
ଛାଡ଼ିଗଲୁ କେଉଁ ଅପରାଧ ଦେଖି
ହୋଇଣ ନିଷ୍ଠୁରମତ ।

କେତେ ଅପରାଧ କରି ସଖି ! ଯେବେ
ଦେଖି ନାହିଁ ତୋର ମାନ,
- ଯେବେ ତୋ ମୁଖରୁ କର୍କଶ ବଚନ
ପାଇ ନାହିଁ ମୋର କାନ ।

କଳନାଦୀ-ବୀଣା— ଗର୍ବଖର୍ବକର
ବଚନ ନ କହ ପଦେ,
ଚଳୁ ନମସ୍କାର— ଦେଇ ଶୋକମୟ
ଦୁସ୍ତର ଘୋର ବିପଦେ ।

ଦୟା ଉପାଦାନେ ଗଢ଼ା ହୋଇଅଛି
ପ୍ରେମେ ତବ କଳେବର,
ପ୍ରେମ-ରସାଣରେ ରସାଣି ଦେଇଛି
ତହୁଁ ପର ବେଦବର ।

କଠିନ ହୃଦୟ ଜାଣି ଅବା ମୋତେ
ହୋଇଅଛୁ ବିରାଗିଣୀ,
କଠିନ ହେଲେ ହେଁ କୁଳଶକୁ କେବେ
ଛାଡ଼ଇ କି ସୌଦାମିନୀ ?

ଉଠ ଉଠ ଅରେ ପଙ୍କଜନୟନ,
ନେତ୍ର ଉନ୍ମୀଳନ କର,
ନବୀନ ଦୁଃସହ ସନ୍ତାପକୁ ମୋର
ପୀୟୂଷଦୃଷ୍ଟିରେ ହର ।

ବାନ୍ଧବ ! ତୋ ବନା ଗାଢ ତମୋମୟ
କୃଷ୍ୟ ହେଉଛି ଧରଣୀ,
ବଦ୍ୟୁତ୍‌ପ୍ରଭାହୀନ ଘନ ଘନାଚ୍ଛନ୍ନ
ଯେମନ୍ତ ଦର୍ଶ ରଜନୀ ।

ଘନପଲ୍ଲବିତ ସନ୍ଧକାର ବନ
ସୁଶୀତଳ ଛାୟାପଥ,
ରବି-ରଶ୍ମି କଣା ପଡ ନାହିଁ ଯହିଁ
ମାଲନଭେ ତାସ୍ୱବତ ।

ତରୁଗଣ ଯହିଁ ସୁସ୍ମିତ ମାଧବୀ
ଲତିକାରେ ଆଲିଙ୍ଗିତ,
ହୋଇ ସୁବାସରେ ଚଉଦିଗ ଭୂମି
କରୁଥାଇ ସୁରଭିତ ।

ଝିଙ୍କାରିଏ ବସି ରବୁଥାନ୍ତି ଯହିଁ
ଅଚ୍ଛିନ୍ନ ଗମ୍ଭୀର ସ୍ୱରେ,
କଲକଣ୍ଠ-କୁଳ କଳକଳ ଧ୍ୱନି
ଯହିଁ ମନ ମୁଗ୍ଧ କରେ ।

ଲଙ୍ଗୁଳ ହଲାଇ ଗୁଣ୍ଡୁଚିଏ ଯହିଁ
ନାଚୁଥାନ୍ତି ପ୍ରମୋଦରେ,
ଦୂରେ ଡ଼ାଳେ ବସି କଜ୍ଜଳପାଖୀଏ
ରଡୁଥାନ୍ତି ଥରେ ଥରେ ।

ମଧ୍ୟାହ୍ନେ ତୋହର ସୁକୋମଳ କର
ଧରି ତହିଁ ବୁଲିବାର,
ସୁସ୍ନିଗ୍ଧ ମାଧବୀ— ମଣ୍ଡପରେ ବସି
ପ୍ରେମାଳାପ କରିବାର,

କୌତୁକେ କୁସୁମ ବାହୁବନ୍ଧ ହୋଇ
ପ୍ରେମଖେଳ ଖେଳିବାର,
ସ୍ମୃତିପଥେ ପଡ଼ି ହୃଦୟ କରତ
ହେଉଅଛି ବାରମ୍ବାର ।
ଅଟ୍ଟାଳପ୍ରାନ୍ତ ରତ୍ନଦୀପ ତହିଁ
କରଇ ତିମିର ନାଶ,
ଉଠୁଥାଏ ଯେଉଁ ପୁରେ ଅବିରତେ
ଅଗୁରୁ ଧୂପର ବାସ ।
ତହିଁ ଗଜଦନ୍ତ ନିର୍ମିତ ପଲ୍ୟଙ୍କ
ଦୁଗ୍ଧ ଫେନନିଭ ଶଯ୍ୟା,
ଶରଚ୍ଚନ୍ଦ୍ରୋପମ ଉପାଧାନ ଦେଇ
ହୋଇଥାଏ ଯାହା ସଜ୍ଜା ।
ତାହା ତେଜି ଆଜ ଶ୍ମଶାନେ ଶୋଇଲୁ
ପ୍ରଜ୍ୱଳିତ ଚିତାକୋଳେ,
ସେ ଭୀଷଣ ଛବି ପ୍ରତିବିମ୍ବ ଆସି
ନାଚୁଥିବ ମୋର ଡୋଳେ ।
ଏଥୁ ବଳି ବଜ୍ର ହୃଦ-ବିଦାରଣୀ
କି କଥା ଅଛି ଅଧିକ
ଏତେବେଳଯାଏ ଫାଟି ନାହିଁ ମୋର
ପାଷାଣ-ହୃଦୟ ଧିକ ।
କେ ଗାଇବ ବୀଣା— ଝଙ୍କାର ମିଶ୍ରିତ
ପ୍ରେମ-ସୁଧାମୟ ଗୀତ ?
କାହା ସଙ୍ଗେ ବସି ଉଲ୍ଲାସେ କରିବି
ମନୋହର ସୁସଙ୍ଗୀତ ?

ସକଳ ବିଶ୍ୱ— ବିଳାପରେ ମୋତେ
ଦିଆଇ ତୁ ଜଳାଞ୍ଜଳି,
ଅତ୍ୟନ୍ତ ଗଭୀର ଦୁଃଖ-କୂପଗର୍ଭେ
ପେଲିଦେଇ ଗଲୁ ଚଳି ।

ଭ୍ରମରର କଳା— ସୁକୋମଳ ରୁଚି
ଅଳ୍ପ ବୟସ କୁମର,
କେତେ ବ୍ୟାକୁଳିତ ହେଉଥାଉ ତଳେ
କୋଳରୁ ହେଲେ ଅନ୍ତର ।

ଆଜି ତାଙ୍କୁ ଶୋକ— ସ୍ରୋତରେ ଭସାଇ
ଛାଡିଗଲୁ ସଖି କାହିଁ !
ଅଭିନ୍ନହୃଦୟା ସଖୀଗଣଠାରୁ
ମେଲାଣି ତ ହୋଇ ନାହିଁ ।

ଫୁଲମାଳ ସ୍ୱହିଁ ବୋଲନ୍ତି, ଅହ୍ନା କି
ଅଭୁତ ମୋର କପାଳେ,
ପ୍ରିୟ ଗଳାହାର ଗଳା କାଟିବାର
ଶୁଣା କାହିଁ କେଉଁ କାଳେ ?
ଏହିପରି ଏକ ପୁଷ୍ପମାଳ ମୋତେ
ପ୍ରିୟା ସଙ୍ଗେ କଲା ଯୋଗ,
ଏହି ପୁଷ୍ପମାଳ ଆଜି ମୋହଠାରୁ
ପ୍ରିୟାଙ୍କୁ କଲା ବିଯୋଗ ।

ଏଣୁ ବିଶ୍ୱରହିଁ ସୌଭାଗ୍ୟ ସମୟେ
ସମ୍ପଦରେ ଯାକୁ ଗଣି,
ଅଭାଗ୍ୟ ସମୟେ ସେହି ପୁଣି ହୁଏ
ସବୁ ବିପଦର ଖଣି ।

ଜଳରୁ ଜନମି ପଦ୍ମିନୀ ସୁନ୍ଦରୀ
ଥରେ ଚହଟାଏ ବାସ,
ସମୟରେ ପୁଣି ସେହି ଜଳକଣା
ପଦ୍ମିନୀକି କରେ ନାଶ ।

ଅବା କାନ୍ତା ମୋର ସୁରେନ୍ଦ୍ର-ନନ୍ଦନୀ
ଅଟେ ଅତି ସୁକୁମାରୀ,
ପୁଷ୍ପମାଳ ତାକୁ କଠିନ ହେବାରୁ
ଜୀବନ ଦେଲା ସଂହାରି ।

ରାଜା ଶୋକ ସ୍ୱରେ ଯେତେବେଳେ କାନ୍ଦିଲେ
ପାର୍ଶ୍ୱଚର ଭୃତ୍ୟଗଣ,
ପ୍ରତିଧ୍ୱନି-ଛଳେ ଉଦ୍ୟାନ ହିଁ ତହିଁ
ଗମ୍ଭୀରେ କଲା ରୋଦନ ।

କ୍ଷଣକ ମଧ୍ୟରେ ଅଯୋଧ୍ୟା ନଗରୀ
ବୁଡିଗଲା ଘୋର ଦୁଃଖେ,
ହାହାକାର ଧ୍ୱନି ଉଚ୍ଚାରିତ ହେଲା
ଅବସନ୍ନ୍ୟେ ଜନମୁଖେ ।

ରାଜମହିଷୀଙ୍କ ନିଧନ-ବାରତା
ଶୁଣି ରାଜବନ୍ଧୁ ଜନେ,
ରାଜା ସମୀପରେ ଉପସ୍ଥିତ ହେଲେ
ସତ୍ୱରେ ବ୍ୟସ୍ତ ମନେ ।

ଇନ୍ଦୁମତୀଙ୍କର ମୃତ କଳେବର
ରାଜାଙ୍କ କୋଳରୁ ବଳେ
ନେଇ ଦାହ ଦେଲେ ଚନ୍ଦନସମିଧ—
ବରଷିତ ଚିତାନଳେ ।

ଉଦ୍ୟାନରେ ରହି ପ୍ରିୟା ପ୍ରେତକାର୍ଯ୍ୟ
ଯଥାବିଧି ସମାପନ,
ତବ ନରପତି ବିଷଣ୍ଣ ବଦନେ
ପୁରକୁ କଲେ ଗମନ ।

ମଣି ହରାଇଲା ଫଣୀ ପ୍ରାୟେ ଦୁଃଖେ
ନିଭୃତ ମନ୍ଦିରେ ରହି,
ରମଣୀ-ବିରହ— ଅନଳ-ଶିଖାରେ
ତନୁ ଦେଉଥାନ୍ତି ଦହି ।

ଆହାର ବିହାର ରାଜକାର୍ଯ୍ୟ ଆଦି
ମଣିଲେ ଗରଳବତ,
ନିବିଡ଼ ନିର୍ଜନ କାନନ ପରାୟେ
ପ୍ରତୀତ ହେଲା ଜଗତ ।

ରାଜକୁଳଗୁରୁ ବଶିଷ୍ଠ ମହର୍ଷି
ସିଦ୍ଧତପା ମହାଜନ,
ଜ୍ଞାନ-ଚକ୍ଷୁ ଯାର ଉନ୍ମୀଳିତ ହେଲେ
କରତଳେ ତ୍ରିଭୁବନ ।

ତ୍ରିକାଳ ଘଟନା ଦର୍ପଣେ ଚିତ୍ରିତ
ହୋଇଥାଏ କରପଦ୍ମେ,
ଅବଗତ ହେଲେ ସକଳ ଘଟଣା
ଘଟିଲା ଯା ରାଜସଦ୍ମେ ।

ନୃପତିହୃଦୟ— ଅଚ୍ଛାଦିତ ମୋହ—
ତମସ ନାଶନ ପାଇଁ,
ଋଷିକୁଳବର— ରଣ୍ଟୁ ଛଳେ ଭଣେ
ଶିଷ୍ୟଙ୍କୁ ଦେଲେ ପଠାଇ ।

ଋଷିଶିଷ୍ୟ ଆସି ନୃପ ସମୀପରେ
ଯଥାବିଧି ସମାଦୃତ,
ହୋଇ ମହର୍ଷିଙ୍କ ଉପଦେଶାବଳୀ
ରାଜାନେ କଲେ ବିବୃତ ।

ଯଜ୍ଞରେ ଦୀକ୍ଷିତ ଥିବାରୁ ମହର୍ଷି
ଆମ୍ଭଙ୍କୁ କଲେ ପ୍ରେରଣ,
କହନ୍ତୁ ଯାହା ଅବହିତଚିତ୍ତେ
ଶ୍ରବଣ କର ରାଜନ ।

ଯେରୂପେ ଗଗନ ଗଗନ ସଦୃଶ
ସାଗର ସାଗରୋପମ,
ଅବନୀମଣ୍ଡଳେ ସର୍ବ ରାଜଗଣେ
ତୁମ୍ଭେ ଏକା ତୁମ୍ଭ ସମ ।

ମହୋଦଧି ପ୍ରାୟେ ତୁମ୍ଭର ହୃଦୟ
ଅତ୍ୟନ୍ତ ଗମ୍ଭୀର ଧୀର,
ସାଧାରଣ କ୍ଷୋଭ ମୋହ ତାକୁ କରି
ପାରନ୍ତି ନାହିଁ ଅସ୍ଥିର ।

ଭବେ ଭବିତବ୍ୟ ଅବଶ୍ୟ ଘଟଇ,
ନ ହୁଏ କେବେ ଅନ୍ୟଥା,
ମୂଢ଼ ଜନେ ସିନା ତହିଁପାଇଁ ବୃଥା
ହୃଦେ ପୋଷିଥାନ୍ତି ବ୍ୟଥା ।

ବିଧିବିଧାତବ୍ୟ ବିଷୟ ନ ବୁଝି
କ୍ଷୋଭ କରିବାର ମନେ,
ପ୍ରାକୃତ ମାନବ ପକ୍ଷେ ଉଚିତ
ନୁହେ ଭବାଦୃଶ ଜନେ ।

ନଦୀପ୍ରବାହରେ ଭସିଯାନ୍ତି ଯିନା
ତଟସ୍ଥିତ ତରୁମାନ,
ପ୍ରବାହ ଉପରେ ପ୍ରବାହ ଆସିଲେ
ଟଳଇ କି ସାନୁମାନ ?

କର୍ମଫଳ ଘେନ ଜନ୍ମ ଲଭୁଛନ୍ତି
ଜୀବଗଣ ବସୁଧାରେ,
ଫଳ ଭୁଞ୍ଜି ସାରି ଯାଉଛନ୍ତି ପୁଣି
କୃତକର୍ମ ଅନୁସାରେ ।

ଜୀବନ-ପ୍ରଦୀପ ଜଳୁଥାଏ ଦେହେ
ଆୟୁସ୍ତୈଳ ଥିବାଯାଏ,
ଆୟୁସ୍ତୈଳ ସବୁ ନିଃଶେଷିତ ହେଲେ
ନିର୍ବାଣ ସେ ହୋଇଯାଏ ।

ଅଚିନ୍ତ୍ୟ ପୁରୁଷ ହସ୍ତେ ଅଛି ସେହି
ତୈଳ ଦେବା ଅଧିକାର,
ଅପକ୍ଷପାତରେ ବଣ୍ଟନ କରନ୍ତି
କର୍ମ ଦେଖି ଯେ ଯାହାର ।

ମର୍ତ୍ତ୍ୟମଣ୍ଡଳରେ ଜନମିଲେ ଦିନେ
ଅବଶ୍ୟ ଅଛି ମରଣ,
ସର୍ବଗ୍ରାସୀ କାଳ ପ୍ରତିନିମେଷରେ
କରୁଛି ଆୟୁ ହରଣ ।

ଥିଲେ କେତେ କେତେ ଅମିତତେଜସ୍ୱୀ
ବସୁନ୍ଧରା-ପତିମାନେ,
ନାମ ମାତ୍ର ଅଛି ଚିହ୍ନ ଯାଇଅଛି
ଭୟଙ୍କର ଶମଶାନେ ।

ତବ ବଂଶେ ଥିଲେ ନୃପତି-ମୁକୁଟ—
ମଣି ପୁରଞ୍ଜୟ ନାମେ,
ମରତ୍ୱେକ ଲଙ୍ଘି ବ୍ୟାପିଥିଲା ତାଙ୍କ
କୀରତି ଅମରଧାମେ ।
ସେହୁ ଯଶୋଧନ ବୀରଗଣାଗ୍ରଣୀ
ଅଛି ଏ ମହୀରେ କାହିଁ ?
କାଳର ଅଜେୟ ପରାକ୍ରମକୁ ସେ
ଲଙ୍ଘି ତ ପାରିଲେ ନାହିଁ ।

ତୁମ୍ଭ ପିତାମହ ଦିଲୀପ ଭୂପତି,
ପିତା ରଘୁ ମହାରଥ,
ଦୋର୍ଦ୍ଦଣ୍ଡକୁ ଯାର ମଘବା ଶଙ୍କଇ
ସେହୁ ଅଛନ୍ତି କି ଅବା ?
ଚିରସ୍ଥାୟୀ ନୁହେ ଶରୀର-ପାଦପ
ଭବ-ତରଙ୍ଗିଣୀତୀରେ,
ପ୍ରାଣ-ମୂଳମାଟି ଧୌତ ହୋଇଗଲେ
ଭାସିଯାଏ କାଳ-ନୀରେ ।

କେହୁ ତ କାହାର ନୁହନ୍ତି ସ୍ୱଜନ
ମାୟାମୟ ଭବ-ହାଟେ,
ଆପଣା ଆପଣା କାଉଡ଼ି ସରିଲେ
ଫେରୁଛନ୍ତି ନିଜ ବାଟେ ।
ତୁମ୍ଭେ ଯାହାପାଇଁ ବିଳାପ କରୁଛ
ତୁମ୍ଭଙ୍କୁ ସେ ଭୁଲି ମନୁ,
ମହାପ୍ରମୋଦରେ ସୁରପୁରେ ଅଛି
ଲଭି ଅପସରୀ ତନୁ ।

ଦୁଷ୍କର ତପସ୍ୟା କରୁଥିଲେ ବନେ
ମହାତପା ତୃଣବିନ୍ଦୁ,
ଇନ୍ଦ୍ର ଆଦେଶରେ ହରିଣୀ ନାମରେ
ଆସି ଏକ ସୁରବଧୂ,
ତପୋଭଙ୍ଗ ପାଇଁ ଅନଙ୍ଗବିଳାସ
ଦେଖାଇଲା ମୁନି ଆଗେ,
ବିଲୋକି ମହର୍ଷି "ମର୍ତ୍ତ୍ୟରେ ମାନୁଷୀ
ହୁଅ ତୁ" ବୋଇଲେ ରାଗେ ।

ମୁନି ଅଭିଶାପେ ପଡ଼ିଲା କାନ୍ଦିସେ
ଅତି ଦୁସ୍ତର ଆପଦେ,
କୃତାଞ୍ଜଳି ହୋଇ ପ୍ରତିକାର ପାଇଁ
ଜଣାଇଲା ମୁନିପଦେ ।

କୂର୍ମଶିର ପରି ଇତର ବଚନ
କ୍ଷଣେ କ୍ଷଣେ ବାହାରଇ,
ଗଜଦନ୍ତବତ ମହତ ବଚନ
ବାହାରିଲେ ନ ଘୁଞ୍ଚଇ ।

ମୁନିଙ୍କ ହୃଦୟ— ଅଭ୍ୟନ୍ତର ସଦା
ସ୍ୱାଭାବିକ ସୁକୋମଳ,
ବହିରାବରଣ ମାତ୍ରକେ କଠିନ
ଯଥା ନାରିକେଳ ଫଳ ।

ସୁର-ବନିତାର ବିନୟରେ ହେଲା
ଋଷିଙ୍କ କୃପା ସଞ୍ଚାର,
ସାନୁଗ୍ରହଚିତ୍ତେ କହିଦେଲେ ତାକୁ
ଶାପତ୍ରାଣ ପ୍ରତିକାର ।

ଯେଉଁ ଦିନ ତୋର     ବକ୍ଷରେ ପଡ଼ିବ
ସ୍ୱର୍ଗୀୟ କୁସୁମ ହାର,
ସେହିକ୍ଷଣି ନିଜ     ଶରୀର ଲଭିବୁ
ଭବାବ୍ଧିରୁ ହୋଇ ପାର ।

ବିକଶିଲ କୁଥ—     କଉଶିକ ବଂଶ—
ସରେ ବାଳା-କୁମୁଦିନୀ,
ଭୁବନ-ଚନ୍ଦ୍ରମା     ହେଲୁ ହୋଇଥିଲ
ତୁମ୍ଭ ଚିତ୍ତବିନୋଦିନୀ !

ବୁଲୁଥିଲ ବେଳେ     ପ୍ରିୟାସଙ୍ଗେ ତୁମ୍ଭେ
ପ୍ରେମପୂର୍ଣ୍ଣ ମନୋରଥେ,
ବୀଣାବିନୋଦିଆ     ଦେବର୍ଷି ନାରଦ
ଯାଉଥିଲେ ସୁରପଥେ ।

ଦୈବଯୋଗେ ବାୟୁ—     ବଳେ ଖସି ତାଙ୍କ
ବୀଣାଗ୍ର-କୁସୁମମାଳା
ଉରେ ପଡ଼ିବାରୁ     ଶାପରୁ ମୁକତି
ଲଭିଅଛି ସୁରବାଳା ।

ତୁମ୍ଭେ ଏବେ ତାକୁ     ଦେଖି ନ ଚିହ୍ନିବ
ସେ ଅବା ଚିହ୍ନିବ କାହିଁ,
ତାହାପାଇଁ ବୃଥା     ଶୋକ କରିବାର
ତୁମ୍ଭ ପ୍ରତି ନ ଯୋଗାଇ ।

ଗଲ କଥା ଗଲ     ସ୍ମୃତିପଟୁଁ ତାହା
ପୋଛିଦିଅ ମହାମନା,
ଗତ କଥା ସ୍ମରି     ଶୋଚନା କରିବା
ନୀତିଶାସ୍ତ୍ରେ ଅଛି ମନା ।

ପ୍ରଜାବତ୍ସଳ ହେ, ପ୍ରଜାରଞ୍ଜନରେ
ନିବେଶିତ କର ମନ,
ଜଗତରେ ଏକା ଗ୍ରଜାମାନଙ୍କର
ପରଜା ପରମ ଧନ ।”
ଏରୂପେ ନୃପଙ୍କୁ ନାନା ଉପଦେଶ—
ବାକ୍ୟେ କରି ପ୍ରବୋଧନ,
ମେଲାଣି ହୋଇଣ ବଶିଷ୍ଠଙ୍କ ଶିଷ୍ୟ
ଅଶ୍ରମେ କଲେ ଗମନ ।
ରାଜାଙ୍କ ହୃଦୟ— ପ୍ରାସାଦରେ ସେଉଁ
ଜ୍ଞାନ-ଦୀପ ଜାଳି ଗଲେ,
ଲିଭିଗଲା ତାହା ଶୋକ-ଜଳ-ସିକ୍ତ
ମୋହ-ପ୍ରଭଞ୍ଜନ-ବଳେ ।
ଶୋକକ୍ଷୀଣତନୁ ନୃପତିଙ୍କି ହେଲା
ଦୁର୍ବହ ମେଦନୀଭର,
ବୋଧ କଲେ ବିଷ ପରିଶେ ବିଷୟ
ଦୁଃଖମୟ ଏ ସଂସାର ।
କିଛିଦିନ ପରେ ଯୋଗ୍ୟ କୁମାରଙ୍କୁ
ରାଜ୍ୟେ କରି ଅଭିଷିକ୍ତ,
ଜାହ୍ନବୀ ସରଯୂ ସଙ୍ଗମ ସ୍ଥାନରେ
ଯାଇ ହେଲେ ଅବସ୍ଥିତ ।
ସେଠାରେ ମରଣ— ଧର୍ମଶୀଳ ତନୁ
ତୋଷି ବିସର୍ଜନ କରି
ଅମରପୁରକୁ ବାଜେ କରି ଗଲେ
ଦିବ୍ୟ କଳେବର ଧରି ।



Printed by B.K. Kar, B.A. at the Saraswata Press, Cuttack, 1940

